

# ଜୀବନ ସଂଗୀତ



ଜନସଂଖ୍ୟା ଶିକ୍ଷା ବିଭାଗ
ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର,
ଓଡ଼ିଶା, ଭୁବନେଶ୍ୱର

# ଜୀବନ ସଙ୍ଗୀତ



ଜନସଂଖ୍ୟା ଶିକ୍ଷା ବିଭାଗ

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଭୁବନେଶ୍ୱର

ବହିର ନାମ - **ଜୀବନ ସଙ୍ଗୀତ (କବିତା ସଂକଳନ)**

ପ୍ରକାଶକ ଓ ସ୍ୱତ୍ୱାଧିକାରୀ- **ଶ୍ରୀ ଚୈତନ୍ୟ ଚରଣ ପ୍ରୁଷ୍ଟି**
ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର,
ଓଡ଼ିଶା, ଭୁବନେଶ୍ୱର

ସଂକଳନ ଓ ସଂପାଦନା- **ଶ୍ରୀ ରମାକାନ୍ତ ରାଉତ**
ସଂଯୋଜକ, ଜନସଂଖ୍ୟା ଶିକ୍ଷା,
ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା, ଭୁବନେଶ୍ୱର

ସମୀକ୍ଷା - **ପ୍ରଫେସର ଡଃ ଶ୍ରୀନିବାସ ମିଶ୍ର**
**ପ୍ରଫେସର ଚିନ୍ତାମଣି ବେହେରା**
**ପ୍ରଫେସର ଡଃ ବାସୁଦେବ ସାହୁ**
**ଡଃ ଶଶୀରେଖା ପଟ୍ଟନାୟକ**

ପ୍ରକାଶନ କ୍ରମ ସଂଖ୍ୟା - **୨୪/୯୫**

ଛାପା ସଂଖ୍ୟା - **୫,୦୦୦ (ପାଞ୍ଚ ହଜାର)**

ମୁଦ୍ରଣ - **ନିସ୍ୱାସ, ୩ - ଚନ୍ଦ୍ରଶେଖରପୁର, ଭୁବନେଶ୍ୱର - ୧୬**

Title of the book - **Jeebana Sangeet**
(A Compilation of Poems)

Publisher & Copy right - **Sri Chaitanya Charan Prusty**
Director, SRC for A. E. Orissa,
Bhubaneswar

Editing and Coordination- **Ramakant Rout**
Programme Coordinator,
Population Education,
SRC, Orissa

Publication No - **24/95**

No. of Copies Printed- **5,000** (Five Thousand)

Printed At - **NISWASS, 3 - Chandrasekharpur,**
**Bhubaneswar - 16**

# ସୂଚିପତ୍ର

# ରଜକ ଗୀତ

**ଗଣକବି ବୈଷ୍ଣବ ପାଣି**

ହାଣିଗଲି ବରଖୋବା ଲୋ ହାଣିଗଲି ବରଖୋବା
ଉଠା ଭାତୁଆଣି ବସା ଜାଉପାଣି
ସରିଗଲା ରାଜ ସେବା ଲୋ ।
ତୁଉ ତ ଅଇଲୁ ମୁଁ ତ ଅଇଲି ସପନା ନଦୀ କୂଳରେ
ଶେଯ ଶେଯାଇଲି ଫୁଲ ବିଛାଇଲି ନିଶି ଗଲା ବିଫଳରେ ଲୋ ।

ଛିଇ ଛିଇ ମଦ ଖାଇବି ନାହିଁ ଲୋ
କଳା ପାଣି ପରି ଦିଶେ
ସେଇ କଳା ପାଣି ପେଟରେ ପଡ଼ିଲେ
ଚଉଦ ଭୁବନ ଦିଶେ ଲୋ ।

(ରଙ୍ଗସଭାରୁ ସଂଗୃହୀତ)

# ଉମା

**ସବୁଜ କବି ବୈକୁଣ୍ଠନାଥ ପଟ୍ଟନାୟକ**

ଛବିଶ ବର୍ଷର ଉମା, ଛଅଟି ସନ୍ତାନ,
ଦିବାନିଶି କୋଳାହଳେ ଶୋଷୁଥାନ୍ତି ପ୍ରାଣ।
କୋଟରେ ପଶିଛି ନେତ୍ର ପାଣ୍ଡୁର ବଦନ,
ଶୀର୍ଣ୍ଣକାୟ ରକ୍ତହୀନ ପାଣ୍ଡୁର ବଦନ।

ଛଅଟି ଆତ୍ମଜ ରକ୍ତ ମାଂସ ଯା'ନ୍ତି ଶୋଷି,
କାହାକୁ ଜଗତେ ଦିନେ ନ କରେ ସେ ଦୋଷୀ।
କୁକ୍କୁଟ ଶାବକ ସମ ରହିଥାନ୍ତି ଘେରି,
ଆଜୀବନ ବନ୍ଦୀ, ପଡ଼େ କିବା ଲୁହା ବେଡ଼ି!

ଏହି ସେହି ଉମା!
ବିଭା ଦଶଟି ବରଷ।
ଶିକ୍ଷା, ରୂପେ, ଗୁଣେ
ଯେ ବା ଥିଲା ଆଦରଶ।

ଏହି ସେ ଚଞ୍ଚଳା ଉମା ଯା' ନୟନ ଭଙ୍ଗୀ
ଚାହିଁ ମୁଗ୍ଧ ହେଉଥିଲା କାନନ କୁରଙ୍ଗୀ।
ପ୍ରାଣଭରା ହାସ୍ୟେ, ଲାସ୍ୟେ, ତା' ଗତି ଛଟକେ
ଲେଖନୀ ମୁନରେ କାବ୍ୟ କବିତା ଅଟକେ।

ଏହି ସେହି ଉମା!
ସେହି ସ୍ୱପ୍ନ ମାୟାବିନୀ।
ଆଜି ପ୍ରେତପୁର ଛାୟା,
ଅଥବା ଡାକିନୀ।

**ରଚନା କାଳ - (୧୯୪୧)**

# ପ୍ରତିଶ୍ରୁତି

**ଚିନ୍ତାମଣି ବେହେରା**

ଯେ ଶିଶୁ ଜନ୍ମିଚି ଆଜି ମଧ୍ୟରାତ୍ରୀ ଅନ୍ଧକାର ତଳେ
କାତର କରୁଣ ସ୍ୱରେ ସେ ଚାହୁଁଚି ପ୍ରତିଶ୍ରୁତି ମୋର
ସ୍ୱାର୍ଥର ଶାଣିତ ଛୁରୀ ନ ଦେବାକୁ ନମ୍ରତାର କଣ୍ଠେ
ଯାତ୍ରା ପାଇଁ କରିବାକୁ ତମସାର ପଥ ପରିଷ୍କାର ।

ନ ଦେବାକୁ ଲଲାଟେ ତା' ଈର୍ଷା ଘୃଣା ଅବିଶ୍ୱାସ କଳା
ଗାଇବାକୁ ଯାତ୍ରା ପଥେ ମଣିଷର ମୁକ୍ତି ପ୍ରୀତି ଗାନ
ସବିନୟ କଣ୍ଠେ ତା'ର ପ୍ରତିଶ୍ରୁତି ମାଗେ ବାରମ୍ବାର
ନିଃସହାୟେ ଦେବା ପାଇଁ ଅନ୍ତରର ସ୍ନେହପ୍ରୀତି ଦାନ ।

ଆମରି ମଣିଷ ଶିଶୁ ଅସହାୟ ମୌନ କଣ୍ଠେ କେବେ
ନିର୍ବାକ ପ୍ରଦୀପ୍ତ ନେତ୍ରେ ଜଣାଉଚି ଦୃଢ଼ ଦାବୀ ତା'ର
ଅମୃତ ବନ୍ଧନେ ତାକୁ ବାନ୍ଧିବାକୁ ମୈତ୍ରୀ ବିଶ୍ୱାସର
ବଞ୍ଚିବାକୁ ଦେବା ପାଇଁ ମଣିଷର ପୂର୍ଣ୍ଣ ଅଧିକାର ।

ଯାଅ ନାହିଁ ସହଯାତ୍ରୀ ମଣିଷର ସ୍ୱର ଶୁଣ ଆଜି
ପ୍ରତିଶ୍ରୁତି ମାଗୁଅଛି ଶିଶୁ ଏକ ଏ ଧରଣୀ ପରେ
ଦେବା ପାଇଁ ଶାନ୍ତି ସ୍ୱସ୍ତି ଦାବୀ ଯାହା ପ୍ରତି ମଣିଷର
ମଣିଷର ମୁଖା ପିନ୍ଧି ହିଂସା, 'ବାଦ' ଯହିଁ କ୍ରୀଡ଼ା କରେ ।

ସେ ଚାହୁଁଛି ପ୍ରତିଶ୍ରୁତି ଅଭିନୟ କରିବାକୁ ଶେଷ
ପଶୁତ୍ୱର, ଦେବତ୍ୱର- ଚାଲିଚି ଯା' ବିଶ୍ୱେ ସଦା ଆଜି
ଚାହେଁନି ସେ ଏ ମଣିଷ, ପିନ୍ଧେ ଯେହୁ ଅମଣିଷ ବେଶ
ଏ ମଣିଷ ପ୍ରାଣପୁରେ ମଣିଷର ବଂଶୀ ଉଠୁ ବାଜି।

ପ୍ରତିଶ୍ରୁତି ଦିଅ ତା'ରେ ରକ୍ତଛିଟା ଲାଗିବନି ଅଙ୍ଗେ
ବଞ୍ଚିବ ମଣିଷ ଶିଶୁ ମଣିଷର ଅଧିକାର ନେଇ
ସବୁଜ ଆକାଶ ତଳେ ଅଙ୍କୁର ଏ ମାନବିକତାର
ବଢ଼ିବ ନବୀନ ତେଜେ ମୁକ୍ତି ପ୍ରୀତି ମୈତ୍ରୀ ଗୀତି ଗାଇ।

# ସାକ୍ଷରତା ଗୀତ

ଶ୍ରୀ ଯଦୁନାଥ ଦାଶ ମହାପାତ୍ର

ପୃଥିବୀ ଭିତରେ ଆମ ଏ ଭାରତବର୍ଷ
ଅପରୂପ ଛବି ତା'ର ସବୁରେ ଉତ୍କର୍ଷ
ଗିରିନଦୀ ବନରାଜି ଅପୂର୍ବ ସୁଷମା
ପ୍ରାକୃତିକ ସଂପଦରେ ଭରା ଆମ ମାଆ
ତଥାପି କାହିଁକି ଆଜି ମୁହଁ ତା ବିମର୍ଷ ।
ଜନସଂଖ୍ୟା ବଢ଼ିଯାଏ ହୁଉ ହୁଉ କରି
ଦାରିଦ୍ର୍ୟର କଷାଘାତେ ଦେଶ ଯାଏ ମରି
ମାଆର ମୁହଁରେ ଆସ ଫୁଟାଇବା ହସ ।

ଜନ୍ମ ନିୟନ୍ତ୍ରଣ ଆଉ ଜଙ୍ଗଲ ସୁରକ୍ଷା
ସାକ୍ଷରତା ଅଭିଯାନ ହେବ ଆମ ଦୀକ୍ଷା
ଫିଙ୍ଗିଦେବା ଦୂରେ ସାଂପ୍ରଦାୟିକତା ବିଷ
ଭାଇ ଭାଇ ସ୍ନେହ ମୈତ୍ରୀ ହେଉ ଆମ ମନ୍ତ୍ର
ଆମବଳେ ବଳିୟାନ୍ ହେଉ ଗଣତନ୍ତ୍ର
ପୃଥିବୀର ମଥାମଣି ଏ ଭାରତବର୍ଷ ।

ବିମାନଘାଟି ଅଞ୍ଚଳ, ଭୁବନେଶ୍ୱର

# ଅକ୍ଷର ଦୀପ

ଶ୍ରୀ ସାରଦା ପ୍ରସନ୍ନ ନାୟକ

ଅକ୍ଷର ଦୀପ ଜାଳିଦେବା
ସାକ୍ଷର ଦୀପ ଜାଳିଦେବା
ନିରକ୍ଷର ଆମ ଭଉଣୀ ଭାଇଙ୍କ
ଜୀବନେ ଆଲୋକ ଭରିଦେବା ।

ନିରକ୍ଷର ଯିଏ ଜାଣିପାରେ ନାହିଁ
ନିଜ ଦାବୀ ନିଜ ଅଧିକାର
ଜାଣିପାରେ ନାହିଁ ଜୀବନମନ୍ତ
ପ୍ରଗତି ଏ ଦୁନିଆର ।
ସାକ୍ଷରତାର କାଉଁରୀ ପରଶେ
ଆଶାର ଆଲୋକ ଭରିଦେବା ।

ଆମ କଳିଙ୍ଗର ଅନ୍ଧାର ବୁକେ
ରହିବେ ନାହିଁ କେ ନିରକ୍ଷର
ଗଗନେ ପବନେ ଭରିବା ସାକ୍ଷର
ଗାଇବ ସୁନୀଳ ସାଗର
ନିରକ୍ଷର ଆମ ଭଉଣୀ ଭାଇଙ୍କ
ପରାଣେ ପୁଲକ ଭରିଦେବା
ଅକ୍ଷର ଦୀପ ଜାଳିଦେବା
ସାକ୍ଷର ଦୀପ ଜାଳିଦେବା ।

ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର,
ଇଉନିଟ୍-୫, ଭୁବନେଶ୍ୱର

# ବିପ୍ଳବିନୀ

ଡଃ ବାସୁଦେବ ସାହୁ

ତୁମେ କହିଥିଲ,
ତଳକୁ ମଥାପୋତି, ଉପରକୁ ନ ଚାହିଁ, ଆସ୍ତେ ଆସ୍ତେ
ଚାଲିବାକୁ

ମୁଁ ଯେଣୁ ଜନ୍ମଦାତ୍ରୀ, ମାତୃଶକ୍ତି, ଗୃହଲକ୍ଷ୍ମୀ
ସରଳା ମୁଁ ବିଶ୍ୱାସ କରିଗଲି,
ନିଜକୁ ବଳଶାଳିନୀ, ବିଜୟିନୀ ଭାବି
ସମାଜର ମୁକୁଟ ମଣିଲି,
ହସି ହସି ସହିଗଲି,
ସବୁ ଦୁଃଖ ଯନ୍ତ୍ରଣାର ଦାବଦାହ
ଅନଟନ, ଅଝଟ, ଆକଟ, ଅଭାବର ଅସୁମାରି ବୋଝ
କେବଳ ଗୋଟିଏ ଆଶାରେ

ପୁଅ ମୋର ହେବ ବୀର,
ଝିଅ ତେଜସ୍ୱିନୀ, ପତି ଅର୍ଜିବେ ଗୌରବ,
ପାଇବି ମୁଁ ପୂଜା, ଦୁର୍ଗା ଭଳି ସଂଗ୍ରାମେ ବା ସେବାରେ
ସାବିତ୍ରୀ ।

ତୁମେ କ'ଣ ସତେ ଚାହୁଁଥିଲ
ଚଉଦିଗେ ଉଡୁ ମୋର ବିଜୟର ଧ୍ୱଜା ?
ବଂଶୀ ତ ବଜାଇ ମୋତେ କଲ ପାଗଳିନୀ
ଲଜ୍ଜା ତେଜି ବାହାରି ଆସିଲି ଅବେଳରେ ଯମୁନାକୁ
ଶିକାର ହେଲି ମୁଁ କେତେ ଧୂର୍ତ୍ତ କନ୍ଦର୍ପର
ଛଳନାରେ ହେଲି ବଶ, ନିଥର ପଥର

ବସ୍ତ୍ର ପରେ ବସ୍ତ୍ର ଖୋଲି, ଦୋହଲିଲା ନିତମ୍ବ, ବକ୍ଷୋଜ,
ଖୋଲିବାକୁ ସୃଷ୍ଟିର ରହସ୍ୟ
ଟେକି ଦେଲି ଉର୍ଦ୍ଧ୍ୱେ ଦୁଇ ହାତ
ବର୍ତ୍ତିଗଲି ମରଣ ଲଜ୍ଜାରୁ ଚରମ
ସେ ତୁମର ଅନ୍ତିମ ଆଶିଷ ।

ଅକ୍ଷର ବ୍ରହ୍ମରେ ତୁମେ ପଦ୍ମା ଦେହେ
ଦେଲ କେତେ ରଙ୍ଗ,
ପ୍ରାଣରେ ଭରିଲ ରସ ଉଚ୍ଚାଟ ମୋହନ
ହେଲେ କେବେ ଦେବୀ କାତ୍ୟାୟିନୀ,
କେବେ ଜହ୍ନ, ମତ୍ତ ନିଶୀଥିନୀ,
ତୁମେ ସ୍ରଷ୍ଟା, ମୁଁ ରହସ୍ୟମୟୀ ସୃଷ୍ଟି
ତୁମେ ଯଜ୍ଞକର୍ତ୍ତା ମୁହିଁ ହବି
ତୁମରି ରହସ୍ୟଲୀଳା ପୁତ୍ତଳିକା ମୁହିଁ
ନିୟାମକ ତୁମେ ମୋର ସ୍ଥିତି ଭବିତବ୍ୟ
ମୁଁ ତେଜ, ମୁଁ ଶକ୍ତି, ତୁମେ ଶିବ,
ଶକ୍ତି ବିନା ହୋଇଯାଅ ଶବ
କାହିଁ ତେବେ ମୋ ଯଶ କେତନ ?
ମୁଁ ତେଣୁ ବିଦ୍ରୋହ କରେ ଧରିବାକୁ
ହାତେ ଅସି, ମସି ଓ ଲିଖନୀ ।

# ଏମିତି ପୃଥିବୀଟିଏ

ଶ୍ରୀ ନୃସିଂହ କୁମାର ରଥ

ଏମିତି ପୃଥିବୀଟିଏ
ଆମେ ଚାହୁଁ ଭେଟିବାକୁ
ମଣିଷର ମୁଖା ପିନ୍ଧି
ଯେଉଁଠି ହୁଏନି ପଶୁ
ଉନ୍ମାଦ, ଉଦ୍‌ବେଳ
ମାଟି ଓଦା ହୁଏ ନାହିଁ
ମଣିଷର ରକ୍ତରେ, ଲୁହରେ
ପବନ ଉଠେନି ଥରି
ଅସହାୟ - ଦୀର୍ଘ ନିଃଶ୍ୱାସରେ ।୧।

ସୌଦାଗରୀ ମନ ନେଇ
ଯେଉଁଠାରେ ହୁଏ ନାହିଁ
ସଂପର୍କର ମାପ ଚୁପ
ଦବା ନବା, କିଣାବିକା
ଲାଭ କ୍ଷତି ହିସାବ ଫର୍ଦ୍ଦରେ ।୨।

ଆକାଶ ବତାସ ନୁହେଁ
ଯେଉଁଠାରେ ପ୍ରଦୂଷିତ
ଗୁଳିଗୋଳା, କମାଣ ଧୂଆଁରେ
ବିସ୍ଫୋରଣ, ରକେଟ ନିଆଁରେ
ଘନ ଘୋର ଶଙ୍କା ସନ୍ଦେହରେ ।୩।

ଏମିତି ପୃଥିବୀଟିଏ
ଆମେ ଚାହୁଁ ଯେଉଁଠାରେ
ପକ୍ଷୀ ଉଡ଼ି ଯାଉଥାଏ
ଡେଣା ଝପଟାଇ ତା'ର
ସୀମାହୀନ ନୀଳ ମୁଲକରେ
କାକର ମୁକୁତାମାନେ
ଦୂବ ଘାସ ହସୁଥାଏ
ଝଲମଲ ସୁନା-ସକାଳରେ ।୪।

ନିଭୃତ ହୃଦୟ ତଳେ
ଥାନ ଟିକେ ରହିଥାଏ
ଆନ ପାଇଁ ଉଷ୍ମ ଆବେଗରେ
ଆପଣାର ବୋଲି ଭାବି
ହସି ହସି କୋଳେଇ ନବାକୁ;
ବଞ୍ଚିବାର ଉପାଦାନ
ଯେଉଁଠାରେ ଭରିଥାଏ
ଶିଶୁର ଦରୋଟି ହସ
ଗୁଲୁରୁ ଗାଲୁରୁ କଥା
ଜୁଲୁ ଜୁଲୁ ଆଖି ଦିଓଟିରେ । । ୫ ।

ତାଳେ ତାଳେ ପାଦ ଦେଇ
ତା'ଥେଇ ତା'ଥେଇ ହୋଇ
ଯେଉଁଠାରେ ପଡ଼େନାହିଁ
ନାଚିବାକୁ ବରାଦୀ ଗୀତରେ

ମୁଣ୍ଡ ଟେକି ଚାଲି ହୁଏ
ପାଟି ଖୋଲି କହି ହୁଏ
ରୋକ୍‌ଠୋକ୍ କଥା ସବୁ
ବେଳ, ଅବେଳରେ ।।୬।

ପ୍ଲଟ୍ ନଂ ୩ ଏ/ଏବ୍,
ବି. ଜେ. ବି. ନଗର,
ଭୁବନେଶ୍ୱର-୧୪

# ଅନାଗତ ଶିଶୁର ଦରୋଟି

ପ୍ରହରାଜ ସତ୍ୟନାରାୟଣ ନନ୍ଦ

ମେଘରୁ ଝରିଲେ ବର୍ଷା .... ଶସ୍ୟ ଖେଳିଯାଏ ଏ ମାଟିରେ
ଶସ୍ୟରୁ ଗଜରୁଥିବା ଦେହ କାହା ସ୍ନେହରେ ଚିକ୍କଣ;
ନାଲି ଗୁଲୁଗୁଲୁ ହସ ସମୟର ସ୍ବର୍ଦ୍ଧିତ ପ୍ରକାଶ
ଆଗକୁ ଚିହ୍ନିତ କରେ .... ଦିଗ .... ବାର ମାସ।

ଗର୍ଭରୁ ଠୁଳାଏ କିଏ .... ଉତାପ ଓ ଅନ୍ନ ଓ ଆୟୁଷ
ଦିନୁ ଦିନ ବଢୁଥିବା କ୍ଳେଶ....
ଜୀବନ ଦୁର୍ମୂଲ୍ୟ କରେ.... ନାନାବିଧ ପ୍ରତିଯୋଗିତାରେ
ଉତ୍କର୍ଷ ତୁମର କାମ୍ୟ
ପରିଧାନ ପରିପାଟୀ ମୃଦୁ ଶବ୍ଦ ସଂଗୀତର ସ୍ୱର,
ଜୀର୍ଣ୍ଣ ହେଉଥିବାବେଳେ ଏ ପୃଥିବୀ
ତୁମେ କାଳେ ସଦ୍ୟଜାତ .... ସୁକୋମଳ.... ଅତି ଅଲିଅଳ
କୋଡ଼ପୋଛା ସନ୍ତାନ ମାତାର !

ସେମିତି ଥାଏ କି ମୃଦୁ ବର୍ଷାଧାର .... ସକାଳ କାକର
ବସନ୍ତର କୁହୁ କୁହୁ ମହୁସିଆଁ ସ୍ୱର,
ମାର୍ଗଶୀର ଧାନଶିଂସା ଚିକ୍‌ମିକ୍ ତାରା ବୈଶାଖର
କେତେ ଦୃଶ୍ୟ ଧକ୍କା ଦିଏ ହୃଦୟରେ
ବୁଝିବାକୁ ଜନ୍ମ ଜନ୍ମାନ୍ତର।

ତୁମେ କାଳେ ରୁଷିଗଲେ ମୁହଁ ଗୁଞ୍ଜି ବୋଉ ପଣତରେ
ଜେଜୀମା କାହାଣୀ ଶୁଣି ଦୁଷ୍ଟ ପୁଅ କାଚ ଗୁମରରେ
ହଂସ ବେକ ଟାଣି ଧରେ,
ସବୁଦିନେ ଅବିନୀତ ଦୁଃଖର ପାହାର
ଶ୍ରମ ଦିଏ ହାତରେ ଓ ସେଥିପାଇଁ ହୁଅ ଆଗୁସାର ।

ଜନଗଣନାରୁ ମିଳେ ଫଳାଫଳ ସମ୍ଭାବ୍ୟ କ୍ଳେଶର
ରୋଗବ୍ୟାଧି ଅଭିଶାପ ଓ ଅତୃପ୍ତ ଦେବଦେବୀଙ୍କର
ଦୃଶ୍ୟକୁ ବିଭକ୍ତ କରେ ତେଣୁ ଆଶା ସୁନ୍ଦର ହେବାର
ଆଶାରେ ହିଁ ରହିଯାଏ ଖିନ୍‌ଭିନ୍ ହୁଏ ଘରଦ୍ୱାର ।

ଶିଶୁଙ୍କ ଲଙ୍ଗଳା ପାଦ ବାରିପଟ ଗୋହିରୀ ଭିତରେ
ଦାଣ୍ଡଆଢ଼େ ଚୂନାଇଟା ବାଲିତଳେ ଲୁଚିଥିବା କଣ୍ଟା,
ଫାଟକ ଉପରେ ଭାର କୁଞ୍ଜ ଲଟା କୁନ୍ଦୁରି ଲଟାର
ସକାଳ ଚିହ୍ନିତ ହେଲେ ବଗିଚାରେ ଘେରି ଦିଏ କିଏ
ତାରବାଡ଼ ?
ଚିହ୍ନି ନାହିଁ କାହାକୁ ତ କୁସଂସ୍କାର ମାନି ବାରମ୍ବାର
ହାତ ଦେଇ ବସିପଡ଼ ମୁଣ୍ଡରେ ଓ ଧିକ୍କାର ଆଳସ୍ୟ
ବିଳାସ ବଞ୍ଚିତ କରେ ଅଭୀପ୍‌ସାରୁ ଜାତିକୁ, ବ୍ୟକ୍ତିକୁ;
ଆଉ କାହା ଧକ୍କାରେ ନିଶ୍ଚିହ୍ନ ହୁଏ ଲୁଚି ବୁଲୁଥିବା ଅହଂକାର,
ଅଜ୍ଞତା ପାରେନା ଢାଙ୍କି ନିଜ ମୁହଁ, ସୂର୍ଯ୍ୟର ଅକ୍ଷର;
ଲାଲ୍ ଶାଗ ପଟାଳିକୁ ଘେରିଯାନ୍ତି ପ୍ରଜାପତି ଦଳ,
ତୁମେ କାଳେ ସବୁଦିନ ''ରାମ ଲଇକ୍ଷଣ ଗୀତ''
ଗାଉ ଗାଉ ଉଠାଅ କୋଦାଳ ?

ଟିକେ ସ୍ୱେଦ ଅଜାଣତେ ବାଷ୍ପୀଭୂତ ହେଲେ କି ମେଘର
ଗୁରୁ ଗୁରୁ ଡାକ ଶୁଭେ, ଆସୁଥିବା ଶିଶୁ ଧାଡ଼ି ଧାଡ଼ି
ସମାନ୍ତର ରହିଥାନ୍ତି ଗଛ ସାଥେ, ଶସ୍ୟ ପୀଢ଼ି ପୀଢ଼ି
ସଂପର୍କିତ ଜୀବନରୁ ଭାଷ୍ୟ ଖୋଜେ ମୃତ୍ୟୁ ଓ କ୍ଷୁଧାର
ଆବର୍ତ୍ତିତ ପ୍ରବାହରେ ଥରୁ ଥର ସ୍ଥିର ହୁଏ ଗତି ମଣିଷର ।

ସେ ପାଇଁ ପ୍ରାର୍ଥନା ଆସେ ଏ ମାଟିକୁ ଆସିଲେ ସନ୍ତାନ
ଫୁଙ୍କୁଯାମା ନିବନ୍ଧରୁ ସମନ୍ୱିତ ଚାହିଦା ପ୍ରାଣର
ଚାରିପାଖେ ରେଖା ଆଙ୍କେ ଅନୁଗତ ଇଚ୍ଛା ଓ କର୍ମର;
ପ୍ରକୃତିର ଅନ୍ତରଙ୍ଗ ଭାବ ଖୋଜେ ଦିନୁଦିନ ମଧୁକ୍ଷରା ମାଟି
ଆଗକୁ ସାଇତି ରଖେ ପୁଞ୍ଜେ ଶସ୍ୟ ଅନାଗତ ଶିଶୁର ଦରୋଟି ।

**ସହକାରୀ ସଂପାଦକ,**
**ସୂଚନା ଓ ଲୋକସମ୍ପର୍କ ବିଭାଗ,**
**ଓଡ଼ିଶା, ଭୁବନେଶ୍ୱର**

# ଆଜି ତା'ର ବାହୁଡ଼ା ବିଜୟ

ଶ୍ରୀ ହରିହର ମିଶ୍ର

ତା'ର ହାତ, ପାଦ, ଅବୟବ
କିଛି ହିଁ ନ ଥିଲା
କାହିଁକି, ଜାଣ ?

ଆଦିମ କାଳରୁ ସେ କିଟୁଙ୍ଗ୍ ଜଗନ୍ତ,
ଏଇ ଜଗନ୍ନାଥ
ପଥରକୁ ପଥରରେ ଘଷି ଥରେ
ଅଂଧକାର ପ୍ରସ୍ତର ଯୁଗରେ
ଅଗ୍ନିର ସଂଦେଶ ଦେଇ ଜଗତକୁ
ନିଜ ପରେ ନିଜେ
ସେହି ବିଜ୍ଞାନର ପରୀକ୍ଷା କରିଲା
ଏବଂ ନିଜେ ଜ୍ୱଳିଗଲା ।

ସେହି ଆଲୁଅରେ
ଆମ ଏ ଅରଣ୍ୟ ଆଲୋକିତ
ଆମରି ସଭ୍ୟତା ଗଢ଼ା
ସେହି ଆଲୁଅରେ
ତା'ର ତ୍ୟାଗ, ତା'ର ଯନ୍ତଣାରେ
ଆମେ ହସୁ, ଆମେ ନାଚୁ
କୋଟି କୋଟି ଧୂମକେତୁ
ଦଂଶିବାକୁ ଆମ ଛାତି
ଧାଉଁଥିଲାବେଳେ ।

ତା’ ତ୍ୟାଗର ଭବିଷ୍ୟତ
ପୃଥିବୀକୁ ଭୋଗ କରି
ଆମେ ତାକୁ ଗ୍ରାସ କରୁ,
ତା’ ଦୟାରେ ବର୍ତ୍ତିଥିବା
ସବୁଜ ଏ ଜଗତକୁ ଭସ୍ମ କରୁ
ମରୁରେ, ଉଷରରେ
ପରିଣତ କରୁ ତା’ର ଲୀଳାଭୂମି
ଦିବ୍ୟଭୂମି ସ୍ୱପ୍ନର ଶ୍ରୀକ୍ଷେତ୍ର।

ଆଜି ତା’ର ବିଜୟ ଧ୍ୱନି ଶୁଭେ
ନବଦିନ ଯାତ୍ରାରୁ ସେ ବାହୁଡ଼ିଲା ବେଳେ
କାଟି କାଟି ଆସେ ଯେ
ସବୁ ଦୁଃଖ, ସବୁ ଅନ୍ଧକାର।
ହାତ ଗୋଡ଼ ନାହିଁ ବୋଲି ତା’ର
ଆମେ ତା’ ସହସ୍ର ହାତ
ପରିଚର୍ଯ୍ୟା କରିବାକୁ ସ୍ୱପ୍ନର ଜଗତ ତା’ର
ପୋଛିବାକୁ ଯେତେ ଜଡ଼ ଅଜ୍ଞାନତା
ପ୍ରଗତିର ରଥ ଟାଣୁ
ଏକତାର ବାଗ ଦଉଡ଼ିରେ
ଗୁନ୍ଥା ଆମ ସମସ୍ତଙ୍କ ମଥା।

ଏ ଯାତ୍ରା ଥିଲା ଆମ ମୃତ୍ୟୁରୁ
ଅସତ୍‌ରୁ, ତମସାରୁ
ଆଲୋକ ଓ ଅମୃତର ସତ୍ୟ ପଥେ
ନିରାମୟ ସ୍ଥିତି
ଆଉ ସୁନ୍ଦର ତା' ପରିବେଶ
ସୃଜିବାର ଅର୍ଥେ
ଯା' ଭିତରେ ଅଛି ସବୁ ସମ୍ଭାବନା
ମଣିଷର ସଭ୍ୟତାର
ପ୍ରଗତିର ନିତ୍ୟ ରୂପ
ଯାହାର ପ୍ରାର୍ଥନା ନେବ
ଚଳାଇ ଏ ଜଗତକୁ
ଆଲୋକର ଶୁଭଙ୍କର ପଥେ।

ସି. ଏମ୍ - ୨୪,
ବୀର ସୁରେନ୍ଦ୍ରସାଏ ନଗର,
ଭୁବନେଶ୍ୱର-୪

# ଅର୍ଦ୍ଧେକ ପୃଥିବୀ

**ଡଃ ମନୋରମା ବିଶ୍ୱାଳ (ମହାପାତ୍ର)**

ତାକୁ ତା'ର ଅଧିକାର ଦିଅ
ଦିଅ ତାକୁ ଅର୍ଦ୍ଧେକ ପୃଥିବୀ
ସ୍ଥାବର, ଜଙ୍ଗମ, ଯାହା ଅଛି ଦେଇ ଦିଅ।
ଦେଖିବ କେମିତି
ଭଲ ପାଇବାର ଗଙ୍ଗୋଦକ ଦେଇ
ସବୁ ଭୁଲ୍‌କୁ ସେ କେମିତି ଠିକ୍ କରିଦେବ।
ତାକୁ ତା'ର ଅଧିକାର ଦିଅ
ଦିଅ ତାକୁ ଅର୍ଦ୍ଧେକ ପୃଥିବୀ।
ଅଦିତି ସେ, ନମ୍ରତାରେ ନମନୀୟ
ଶକ୍ତି ସ୍ୱରୂପିଣୀ।
ଛାତି ଫାଟି ଦୁଇ ଖଣ୍ଡ ହେବା ମୁହୂର୍ତ୍ତରେ ବି ସେ
କିଛି କହେ ନାହିଁ।
ତାକୁ ତା'ର ଅଧିକାର ଦେଇ ଦିଅ
ତା' ଶକ୍ତିକୁ କ୍ଷୁବ୍ଧ କର ନାହିଁ।
ବସୁନ୍ଧରା, ନାରୀ ସିଏ
ଦିଅ ତାକୁ ଅର୍ଦ୍ଧେକ ପୃଥିବୀ।

**ରିଡର, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,**
**୧୨୫, ଆଚାର୍ଯ୍ୟ ବିହାର,**
**ଭୁବନେଶ୍ୱର-୭୫୧୦୧୩**

# କାଳି ସକାଳେ

**ଶ୍ରୀ ପ୍ରସନ୍ନ କୁମାର ମହାନ୍ତି**

ନଇ କେବେ କ୍ଷମା ଦିଏନା
କ୍ଷମତାରୁ ବେଶି ଲୋକ ଧରିଥିବା ଡଙ୍ଗାକୁ,
ଅଧିକ ଫଳର ଭାର।
ସୁନ୍ଦର ଗଛଟିକୁ ଭାଙ୍ଗି ମାଟିରେ ଲୋଟାଏ
ଅରଣ୍ୟର ନିଝାଡ଼ ନିବିଡ଼ତା
ଘୋର ବନାଗ୍ନିର ପ୍ରଳୟ ରଚେ।
ମଣିଷ ତ ସବୁବେଳେ ଦେଖିଚି
ସ୍ତବ୍ଧ ହୋଇଚି ବାରମ୍ବାର।

ଲକ୍ଷ୍ମଣ ଗାରର ସୀମା ଡେଇଁ
କେତେ ସୁକୁମାର ଫସଲ ଉଜୁଡ଼ି ଯାଇଚି
ତଥାପି କାହିଁକି ଏ ନିର୍ବୋଧତା
ସୁନ୍ଦର ବଗିଚାଟିକୁ ମରୁଭୂମି କରିଦେବାକୁ
କି ଅସୁସ୍ଥ ଜିଦ୍ ମଣିଷର !
ବହୁ ବର୍ଷ ପରେ ଯାଇଥିଲି
କୋରାପୁଟ ଓ ଫୁଲବାଣୀ
କେତେ ନୃତ୍ୟାଙ୍ଗନା ଶୀତଳ ଝରଣା
କେବେଠୁଁ ମରିଗଲେଣି ସେଠି।

ଏବେ ସେଠି ଗଡୁଚି କେବଳ
ସେମାନଙ୍କ ହାଡ଼ ଓ କଙ୍କାଳ !
ନିବିଡ଼ ଅରଣ୍ୟର ସବୁଜ କୋଳ

ବସ୍ତ୍ରାହରା ଜନନୀ ପରି ଶୂନ୍‌ଶାନ୍
ବିକଟାଳ ରଡ଼ି ଛାଡ଼ି ମରୁଭୂମିର ପ୍ରେତ
ଶୋଷି ଚାଲିଛି
ସୁକୁମାର ପୃଥିବୀର ସବୁଜ ରକ୍ତ !

ସକାଳର ସୂର୍ଯ୍ୟ ମୁହଁରେ
ବିଷାଦର ଅଶ୍ରୁ
ଜହ୍ନରାତିର ସ୍ୱପ୍ନିଳ ଶିହରଣରେ
ବିଷାକ୍ତ ଦୁଃସ୍ୱପ୍ନର କାଳିମା !
ଘୋର କାଳାନ୍ତକ କଳା ସମୁଦ୍ରର ଜିଭ
କୂଳ ଲଙ୍ଘି ସବୁ କିଛି ଚାଟି ନିଏ
ସେଇ ସମୁଦ୍ର ତିଆରିରେ ମଣିଷ
କାହିଁକି ଉନ୍ମତ୍ତ ?

କାଲି ରାତି ପାହୁ ପାହୁ
ସବୁ ଦୁଷ୍ପ୍ରାପ୍ୟ ହେବ....
ଅଣ୍ଟିବନି ମାଟି ଓ ପାଣି
ଆଲୋକ ଓ ପବନ
ସ୍ନେହ, ପ୍ରେମ ଓ ବିଶ୍ୱାସ
କିଛି ଅଣ୍ଟିବନି...
ମଣିଷକୁ ଜୀବନ ଅଣ୍ଟିବନି
ସଜନା ଗଛରୁ ନିଆଁ ଧାସରେ
ଶଁବାଳୁଆ ପରି ଖସି ପଡ଼ିବ
ପୃଥିବୀରୁ ସାରା ମଣିଷ ଜାତି !

ମାଟି ଆଜି ହଠାତ୍ କାହିଁକି
ଶୁଖିଲା ଓ ନୁଖୁରା ଦିଶେ ଏତେ ?
ଚାରିଆଡ଼େ ଧୂଳି ଆଉ ଶୁଖିଲା ପତ୍ର ଉଡ଼େ
ଆଷାଢ଼ର ଏଇ ଆଶ୍ଚର୍ଯ୍ୟ ସନ୍ଧ୍ୟାରେ !
କାହିଁକି ଚାରିଆଡ଼େ ଦଳ ଦଳ
ଶାଗୁଣା ଓ ଚିଲ !
କାହିଁକି ଉଡ଼ି ବୁଲେ
ବିକଟାଳ କୃଷ୍ଣପକ୍ଷ ଦୁଃଖର ଈଗଲ୍ ?
ଆଜି ହୁଏତ ଶେଷ ଦିନ

କ୍ଷମା ଓ ରିହାତିର ।

ଈଶ୍ୱରଙ୍କ ଧୈର୍ଯ୍ୟ ଓ ଉଦାରତାର ।

କାଲି ରାତି ପାହିଲେ ନିଶ୍ଚେ
ଫାର୍ଶା ପରି ଶାଣିତ ଓ ଭୟପ୍ରଦ

ଦିଶିବ ତାଙ୍କ ଆଖି

କୋଟି କୋଟି ବର୍ଷର ପୁରୁଣା ଆମ ଘରକୁ
ପେଶି ଚୁନା କରିଦେବେ ସେ
ନିଜର ଅଚଞ୍ଚଳ ଓ ନିରପେକ୍ଷ ବଜ୍ରମୁଷ୍ଟିରେ ।

**ଅଧ୍ୟାପକ, ଓଡ଼ିଆ ବିଭାଗ,**
**ବି. ଜେ. ବି. କଲେଜ, ଭୁବନେଶ୍ୱର**

# ପରିବେଶ ସୁଖମୟ

ଶ୍ରୀମତୀ ସୁଧାଂଶୁବାଳା ପଣ୍ଡା

କି କବିତା ଲେଖି ପଢ଼ିବି ଆଜି ମୁଁ
ଆଖିରେ ଭରିଛି ଲୁହ
ମନର ପ୍ରଦୀପ ଶିଖାରେ ଜଳେ ମୁଁ
ପୁଅ ନୁହେଁ ମୁହିଁ ଝିଅ....
ତମ ସରଜନା ଶ୍ୟାମଳ ଧରାରେ
ବିତେ ଆମ ଦିନ ରାତି
ପୁରୁଷ ଓ ନାରୀ ସଂସାରର ତରୀ
ଭାସୁଥାଏ ଯୁଗ ବିତି
କିଏ ତ କାହାକୁ ଛାଡ଼ିପାରେ ନାହିଁ
ପୁଅ ଖୋଜୁଥାଏ ଝିଅ
ଝିଅ ଖୋଜୁଥାଏ ପୁଅ.....।

ମମତାର ପ୍ରୀତି ବନ୍ଧନେ ଦୁହେଁ
ବାନ୍ଧି ହୋଇ ରହିଥାନ୍ତି
ତଥାପି ଝିଅର ଜନମ ଅସାର
ପୁଅର ଆକାଶେ ଗତି
ମରିଯାଏ ମନ ସରେ ନାହିଁ ଦିନ
ଭାବି ଭାବି ଉଠେ କୋହ
କାହିଁକି ହେଲି ମୁଁ ଝିଅ...... ?

ତମେ ପରା ଶିବ ଶିବା ବିନେ ଶବ
ଛାଡ଼ି ପାର ନାହିଁ ସତୀ

ଅନନ୍ତ ବ୍ରହ୍ମାଣ୍ଡ ବିଶ୍ୱ ଯାହାର
ପରିଚୟ ଲକ୍ଷ୍ମୀପତି
ତେବେ କିଆଁ ମୁହିଁ ହେବି ହୀନିମାନୀ ?
ଫୁଟାଇବି ହସ ଓଠେ ଅହରହ
ଶକ୍ତିମୟୀ ମୁଁ .... ଶକ୍ତିମୟୀ ମୁଁ
ଜଗତର ସ୍ନେହ ସୁଅ......।

ସଂସାରରେ ଯଦି ସୁଖ କିଛି ଥାଏ
ପୁରୁଷର ପାଇଁ ନାରୀ
ସୁଖର ସପନ ନାରୀ ଦେଖୁଥାଏ
ପୁରୁଷକୁ ସାଥି କରି
ଏକ ଅପରର ପରିପୂରକ ତ ଏକ ମନ ଏକ ଦେହ
ଏକ ମୁଦ୍ରାର ଦୁଇ ପାର୍ଶ୍ୱ ଭଳି ପୁଅ ଝିଅ ସୁଖମୟ.....।

# ଗୋଟିଏ ସନ୍ତାନ ଲୋଡ଼ା

ଡଃ ଉପେନ୍ଦ୍ର ପ୍ରସାଦ ନାୟକ

ପୃଥିବୀ ଦୋହଲିଯିବ
ଶିଶୁର ହସକୁ ଯଦି ହତ୍ୟା କରେ,
ସମୟ ଓ ସମ୍ଭାବନାର ଭୟଙ୍କର ପ୍ରେତ;
ପୃଥିବୀ ଦୋହଲିଯିବ
ନାରୀର ଅନାବିଳ ପ୍ରେମକୁ ବଳି ଦେଇ
କାମାସକ୍ତ ପୁରୁଷ
ନିଜକୁ ନିଜେ ନ କଲେ ଆୟତ୍ତ।

ଲୋଡ଼ା ନାହିଁ ଜୀବନକୁ ଉପହାସ କରି
ପ୍ରତାରଣାର ବେସୁରା ରାଗିଣୀ ତୋଳି
ସଂହତି ନାମରେ
ଅପସଂସ୍କୃତିର ସୁର ତୋଳିବାରେ।
ଲୋଡ଼ା ନାହିଁ କଳ୍ପନାର କାଚଘର ଭାଙ୍ଗି
ଜୀବନର ଛନ୍ଦ ହାରି
ଅସତ୍ୟର ସିଂହଦ୍ୱାର ଭବିଷ୍ୟତ ସ୍ୱପ୍ନ ଦେଖିବାରେ।

ସମୟର ଆବର୍ତ୍ତନେ
ପରିବର୍ତ୍ତନର ସ୍ୱର
ମଣିଷକୁ ଦେଉ ତା'ର ନ୍ୟାଯ୍ୟ ଦାବୀ
ସମତା ଓ ମମତାର ଫୁଲ
ଶୀତ ବସନ୍ତ ନିଦାଘ
ସଂଜ ଓ ସକାଳ ଲିପି
ଲେଖୁ ଦେଉ ସତ୍ୟାଗାର

ସ୍ପଷ୍ଟ କଥା ସ୍ପଷ୍ଟ ହେଉ
ଜଳି ଉଠୁ ସତ୍ୟର ମଶାଲ।

ଶତପୁତ୍ରର ଜନନୀ ଗାନ୍ଧାରୀ ଆଜି
ବନ୍ଧ୍ୟା ହେଲେ କ୍ଷତି ନାହିଁ
କ୍ଷତି ନାହିଁ ବାସ୍ତବତାର ବଳୟରେ
ଜୀବନକୁ ହରି ଫେଡ଼ି ରଂଗ ଗୁଣିବାରେ,
ଏ ପାର୍ଥିବ ପୃଥବୀ ପାଇଁ
ଏକ ପାର୍ଥ ଜନ୍ମ ହେଲେ କ୍ଷତି ନାହିଁ
କ୍ଷତି ନାହିଁ ସତ୍ୟ ଆଗେ
ସିଂହାସନ ରାଜ୍ୟ ଟଳି ଗଲେ।

ଗୋଟିଏ ସନ୍ତାନ ଲୋଡ଼ା
ଯିଏ ବଦଳାଇ ଦେବ
ପୃଥିବୀର ମାନଚିତ୍ର,
ଉଚ୍ଛେଦ କରିପାରିବ
ସମାଜର ଯେତେ କୁସଂସ୍କାର,
ଆଦର୍ଶର ନକ୍ସା ଆଙ୍କି ପାରିବ ଯେ
ନୂତନ ସୂର୍ଯ୍ୟୋଦୟରେ,
ଉଦୟ ରାଗର ଲିପି ଲେଖି ଦେବ
ସଂପ୍ରୀତି ଓ ଭାବ ସାମ୍ରାଜ୍ୟରେ ବସି
କରିବ ସେ ଦୃଢ଼ ଅଙ୍ଗୀକାର।

**ଆସୋସିଏଟ୍ ପ୍ରଫେସର,**
**ଅଭିନ୍ନ ଚନ୍ଦ୍ର ହୋମିଓପାଥିକ ମେଡିକାଲ କଲେଜ,**
**ଭୁବନେଶ୍ୱର**

# ପୃଥିବୀ ବଞ୍ଚିଲେ ଆମେ ବଞ୍ଚିବା

ଶ୍ରୀ ଶରତ କୁମାର ବିଶ୍ୱାଳ

ଆମ ପୂର୍ବସୂରୀ ପ୍ରକୃତି ସହିତ
ଚଳୁଥିଲେ ମିଳିମିଶି
ପ୍ରଗତି ଆଳରେ ବିଜ୍ଞାନ ବଳରେ
ଆମେ ଦେଲେ ତାକୁ ନାଶି ।୧।

କିଏ ବଡ଼ ଆମେ ଦେଖାଇ ହେବାକୁ
ଚାଲିଛି ପ୍ରତିଯୋଗିତା
ଆଜି ସେଥିପାଇଁ ଅଶାନ୍ତ ପ୍ରକୃତି
ଜଳାଏ ଆମର ଚିତା ।୨।

ପାହାଡ଼, ଜଙ୍ଗଲ, ନଦୀ, ନାଳ, ଝର
ଧ୍ୱଂସ କଲେ ଆମେ ମିଶି
ଅଶାନ୍ତ ପ୍ରକୃତି କୋପ କରିଅଛି
ପୃଥିବୀକୁ ଯିବ ଗ୍ରାସି ।୩।

ଉତ୍ତାପ ବଢୁଛି, ବରଷା କମୁଛି
ଜଙ୍ଗଲରେ ନାହିଁ ଗଛ
ବନ୍ୟା, ବାତ୍ୟା, ଘୂର୍ଣ୍ଣୀ, ଦୁର୍ଭିକ୍ଷ ସହିତେ
ଆସନ୍ତି ପଛକୁ ପଛ ।୪।

ଶହ ଶହ ପଶୁପକ୍ଷୀ ଗଛଲତା
ଅକାଳେ ଯାଆନ୍ତି ନାଶ
କ୍ଷୁଧିତ ଶିଶୁଙ୍କ ଓଠରୁ ଝରୁନି
ଆଜି ଆଉ ମୃଦୁ ହସ ।୫।

ବାୟୁ ପ୍ରଦୂଷିତ ହୋଇଛି ବିଷାକ୍ତ
ମୁଣ୍ଡକୁ ଦିଏ ଘୂରାଇ
ଖୋଲା ପବନରେ ଆନନ୍ଦ ମନରେ
ନିଃଶ୍ୱାସ ପାରୁନୁ ନେଇ ।୬।

ଓଜୋନ୍ ସ୍ତରରେ ହୋଇଅଛି ଛିଦ୍ର
ସିଏ ତ ଆମର କାଳ
ଘର ଚାରି କାନ୍ଥ ଭିତରେ ରହିବା
ବନ୍ଦ ହେଲା ଆମ ଖେଳ ।୭।

ସୂର୍ଯ୍ୟ ଆଲୋକରେ ଆମେ ନିର୍ଭୟରେ
ବୁଲିବାକୁ କରୁ ଭୟ
ବାଇଗଣୀ ରଶ୍ମି ପ୍ରଭାବ ଆମକୁ
କରୁଛି ଆଜି ଅଥୟ ।୮।

ସଜାଡ଼ି ଦବାକୁ ବିଶ୍ୱ ପରିବେଶ
ପାଉନି ଆମ ଶକତି
ଏଭଳି ବିପଦୁ କିପରି ଉଦ୍ଧାର
ହୋଇବ ମଣିଷ ଜାତି ।୯।

କ୍ଷାନ୍ତ ହେବା ଆସ ବିପର୍ଯ୍ୟୟ ପଥୁ
ବଦଳାଇ ମତିଗତି
ପ୍ରକୃତି ସହିତ ସହଯୋଗ କଲେ
ଶାନ୍ତ ହୋଇବ ପ୍ରକୃତି ।୧୦।

ପରିବେଶ ରକ୍ଷା ପାଇଁ ମିଳିମିଶି
ଖଟାଇବା ବୁଦ୍ଧି ବଳ
ଆମେ ତ ବଂଚିବା ରହିଲେ ପୃଥିବୀ ।
ପରିବେଶ ନିରିମଳ ।୧୧।

**'ବୀଣା ନିଳୟ',**
**୭ମ/୫୧, ଶୈଳଶ୍ରୀ ବିହାର,**
**ଭୁବନେଶ୍ୱର**

# କରିବା ପରିବେଶକୁ ସୁନ୍ଦର ସରସ

ଶ୍ରୀ ଦେବରାଜ ସାମନ୍ତରାୟ

କୋଇଲିର କୁହୁ ଡାକ ଲାଗୁଥିଲା ମିଠା
ହସୁଥିଲା ଫଳଫୁଲେ କେତେ ଗଛଲଟା
ଖେଳୁଥିଲେ ଶୁଆଶାରୀ ଗଛଡାଳେ ବସି
ବୋବାଉଥିଲା ବିଲୁଆ କିଆବଣେ ପଶି ।

ମହୁଲ-କଣ୍ଟେଇ କୋଳି- କେନ୍ଦୁ-କାଠ ବେଲ
ଫଳୁଥିଲା ବନସ୍ତରେ ମିଠା ମିଠା ଫଳ ।

ମାଟି ମାଆ ସବୁଜିମା ରୂପ ଗଲା ଲୁଚି
ପଡ଼ିଆ ଗୋଚର ଭୂଇଁ ନାହିଁ ଆଉ କିଛି ।

କେତେ କଳ କାରଖାନା କେତେ କୋଠାବାଡ଼ି
ବଣ-ବିଲ-ମଶାଣିକୁ ବସିଲାଣି ମାଡ଼ି ।

ଯୁଆଡ଼େ ଦେଖିବ ଖାଲି ମଣିଷର ହାଟ
ମଣିଷରେ ପୂରିଲାଣି ଘର- ବାଟ-ଘାଟ ।

ସହି ହେଉ ନାହିଁ ଦେଖି ବନସ୍ତର ଦୁଃଖ
ଦିଶୁନି ଘଟଣ ଦୂର ପରବତ ମୁଖ ।

ଆକାଶ ଗୋଟାକଯାକ ମଇଳାରେ ଭରା
ନଈ ନାଳ ସଫା ଜଳ ଦିଶିଲାଣି କଳା ।

ପୂରଣ କରିବା ଲାଗି ନିଜର କାମନା
ସୁନାର ସଂସାରଟିକୁ କଲେ ଲୋକ ଚୂନା ।

ରଖିଲେ ପିଲାଙ୍କ ପାଇଁ ଅନୁର୍ବର ଭୂଇଁ
ପୋତିଲେ ମଞ୍ଜି ଯେଉଁଠି ଫଳ ଫଳେ ନାହିଁ।

ଉଜୁଡ଼ା ଉପୁଡ଼ା ବଣ-କଟା ଗଛ ଦେଖି
ହୋଇପାରିବେ କି ଆମ ପିଲାମାନେ ସୁଖୀ ?

ଦୂଷିତ ଜଳ, ବିଷାକ୍ତ ବାୟୁ ସୃଷ୍ଟି କରି
ନଷ୍ଟ କଲାଣି ମଣିଷ ସବୁ ସୁଖ-ଶିରୀ।

ଆମ ପରିବେଶ ଯେବେ ହୋଇବ ଏମିତି
କହ ମଣିଷ ଏଠେଇ ଚଳିବ କେମିତି ?

କମି ଗଲେ ଜନସଂଖ୍ୟା ରହନ୍ତାନି ଦୁଃଖ
ଖାଦ୍ୟ- ବସ୍ତ୍ର ସବୁଥିରେ ମିଳିଥାନ୍ତା ସୁଖ।

ଯେଉଁ ଦିନ ଚାରିଆଡ଼େ ଗଛ ଯିବ ପୂରି
ବଢ଼ିବ ସେଦିନ ଯାଇ ଦୁନିଆର ଶିରୀ।

ଘରେ ଗୋଟିଏ ସନ୍ତାନ କଲେ ଖେଳାଲୀଳା
ଜାଣିବ ବୈକୁଣ୍ଠପୁର ସେ ଘରଟି ହେଲା।

ଧରି ହୃଦଗତେ ଏଇ ଭାବନାକୁ ଆସ
କରିବା ପରିବେଶକୁ ସୁନ୍ଦର ସରସ।

**ସରକାରୀ ପ୍ରାଥମିକ ବିଦ୍ୟାଳୟ,**
**ୟୁନିଟ୍ ନଂ-୧, ଭୁବନେଶ୍ୱର-୯**

# ସଂକଳ୍ପ

ଶ୍ରୀ ଜୟକୃଷ୍ଣ ସାମଲ

ଚନ୍ଦ୍ରାବତି !
ଆଜି ତ ଜଟିଆ ଲଗ୍ନ
ଶେଷ ତିଥି, ତୁମର ବିବାହ
ବର୍ଷା ନାଚେ ରିମ୍ ଝିମ୍
ମୋ ଚାରିପାଖରେ ଆଜି ଗଛମାନେ
ଫୁଙ୍କୁଛନ୍ତି ଶ୍ରାବଣୀ ସିତାର ।

ଲହଡ଼ି ଖେଳୁଛି ବନ୍ୟା
ଘାଇ ମୁହଁ କରୁଛି ଗର୍ଜନ
ଚାରିଆଡ଼େ ଶୁଭୁଅଛି ଆଜି
ମଣିଷର କରୁଣ ଚିତ୍କାର
ପାଣି ଘେରେ ରହି ଚନ୍ଦ୍ରାବତୀ
ମାନସ ଚକ୍ଷୁରେ ଦେଖେ
ତମ ବାହା ମଙ୍ଗଳ ମଣ୍ଡପ ।

ବେଦୀପରେ ବସିଅଛ ତୁମେ
ଚାରିପାଖେ ବାନ୍ଧବୀଙ୍କ ମେଳ
ଟିପି ଟିପି ଚନ୍ଦନର ଟୋପା
ହସୁଥିବ ତୁମରି କପୋଳ ।

ଅତୀତକୁ ଟାଣି ଧରି ତୁମେ
ଖୋଜୁଥିବ ଭବିଷ୍ୟତ ସୁନେଲି କଳ୍ପନା
ପଥଭୁଲା ନାଉରୀର ତୁମେ
ହେବ ନିଶ୍ଚେ ଦିଗ୍‌ବାରେଣୀ ସ୍ତମ୍ଭ।

କିଏ କେତେ ଦେଉଥିବେ ଆଣି
ତୁମ ପାଇଁ ନାନା ଜାତି ଉପହାର ସବୁ
ବନ୍ୟା ଘେରା ମୋ ଗାଁ ମାଟିରେ ବସି
କ'ଣ ବା ଦେବି ତୁମ ପାଇଁ
ଲେଖୁଅଛି ଏ ଟିକି ଚିଟାଉ—

ଚନ୍ଦ୍ରାବତି !
ଉପହାର ନାହିଁ ମୋର ପାଖେ
ପଠାଇବି ଶୁଭ ବିବାହରେ
ଦୂରୁ ବସି ଆଶୀର୍ବାଦ ଦେଉଅଛି ଖାଲି
ଚଉଠି ରାତିରେ ନିଶ୍ଚେ କୁଳଦୀପ ଛୁଇଁ
କରିବ ସଂକଳ୍ପ
କନ୍ୟା ଅବା ପୁତ୍ର ହେଉ
ମନାସିବ ଗୋଟିଏ ସନ୍ତାନ।

**ସ୍ୱରାଷ୍ଟ୍ର ବିଭାଗ, ରାଜ୍ୟ ସଚିବାଳୟ,**
**ଭୁବନେଶ୍ୱର**

# ନୂଆ ସମାଜର ଛବି

**ଶ୍ରୀ ରମେଶ ଚନ୍ଦ୍ର ଧଳ**

ଆସ ବନ୍ଧୁ ଆସ ଗଢ଼ିବା ଏକ ସମାଜ ନୂଆ,
ମଣିଷ ମନରେ ଘୃଣାର ପ୍ରାଚୀର ନ ହେଉ ଠିଆ ।
ଭୋଗର ବିଳାସ, ଶୋଷଣର ନିଶା, ଠକାମିର କଳା ଛାଇ
ଯେଉଁ ସମାଜର ସୀମା ସରହଦେ ଖୋଜିଲେ ମିଳିବ ନାହିଁ ।
କେହି କେବେ ରୋଗେ ବୁଜିବେନି ଆଖି
ମରଣକୋରଡ଼ା ଖାଇ ।
ବନ୍ଧୁତାର ହାତ ବଢ଼ାଇ ଦେବାରେ ମୈତ୍ରୀର ଗାନ ଗାଇ ।
ଛୋଟ ପରିବାର ସୁଖୀ ପରିବାର ସାଫଲ୍ୟର ମାପକାଠି
ବ୍ୟର୍ଥତା ଏଠି ସମାଧି ନେବରେ ପାରିବନି ମୁଣ୍ଡ ଟେକି ।
ନୂଆ ସମାଜର ନୂଆ ଘର ଆମ ମୁକୁଳା ରହିବ ଭାଇ
ଅବହେଳିତର ମହାନ୍ ତୀର୍ଥ ଆଗୁସାର ହେବା ପାଇଁ ।
ଗୁଳିଗୁଳା ହିଂସା ବିବାଦ ପର୍ବ ହେବ ମଶାଣିର ଗାଥା
ଏହି ସମାଜର ବେଦ ଇତିହାସ ନୂଆ କରି ହେବ ଲେଖା ।
ମାଟିର ସରଗ ରଚନା କରିବା ଛବି ମୁଁ ଆଙ୍କୁଛି କବି
ଦେଖି ଯାଆ ଥରେ ଅନ୍ଧାର କାଟି ଯେଉଁଠି ଉଠିବ ରବି ।

**'ଆରୋହୀ',**
**ପ୍ଲଟ ନଂ-୧୩-ଏ,**
**ଷ୍ଟେସନ ସ୍କୋୟାର,**
**ୟୁନିଟ୍-୩, ଭୁବନେଶ୍ୱର-୭୫୧୦୦୧**

# ସ୍ୱସ୍ତ୍ୟୟନ

ଶ୍ରୀ କମଳାକାନ୍ତ ପଣ୍ଡା (କଳ୍ପାନ୍ତ)

ଜୀବନ ବିମୁଖ ବୋଲି
ଜନ୍ମ ତାର ଅମଙ୍ଗଳ ବୋଲି
ଆଜିର ଜନ୍ମିତ ଶିଶୁ ଜାଣିଲାଣି
ସହସା ସମୟ ଏବେ
ଅତି ଅବିବେକୀ ।

ଏଠି ବନ୍ଧୁତା ଖୋଜିଲେ....
ମିଳେ ପ୍ରତାରଣା
ସ୍ନେହ ଖୋଜିଲେ....
ମିଳେ ଉପେକ୍ଷା ।

ଡେଙ୍ଗ ବିସୋରିଯାଏ ଫୁଲକୁ
ଜ୍ୟୋତ୍ସ୍ନା ଜହ୍ନର ନୁହେଁ
ଅନ୍ଧାର ରାତିର ନୁହେଁ....
କାକର ଘାସର ବି ନୁହେଁ ।
ଆହା ବି ନୁହେଁ ହୃଦୟର ।

ଘର ଆଗରେ କ୍ରୋଟନର ଗଛ
ଏରୁଣ୍ଡି ବନ୍ଧରେ କିନ୍ତୁ
ଚିହ୍ନା ଚିହ୍ନା ଖାଁ ଖାଁ
ନାହିଁ ନାହିଁର ଆବାଜ

ହେ ଚଷମା ପିନ୍ଧା ମହାତ୍ମାମାନେ !
ଦେଖି ପାରୁଛ କି
ଆଷାଢ଼ର ବର୍ଷାତୁର ଟୋପାରୁ
ଝରିପଡୁଚି କେମିତି ଉଷୁମ ଲୁହ
ନୂଆ ବୋହୂଟି
କେମିତି ଭାଗ୍ୟକୁ ନିନ୍ଦି ନିନ୍ଦି
ଶୀତଳ ଆଲିଙ୍ଗନରେ
ସେ ବିବର୍ଣ୍ଣା
ମାଟି ସହିତ ସାମିଲ ହୋଇଯାଏ

ଗୋରା ଶରୀର
ସ୍ୱଚ୍ଛ ଆତ୍ମା
ଅଜାଡ଼ି ଦେବାର ମମତାସିକ୍ତ ମନ।

ଶାଣଦିଆ ଚାଲିଛି କୁରାଢ଼ିରେ
ଅଥଚ ଗଛ/ଡାଳ/ପତ୍ର ନିଶୂନ...
ଚନ୍ଦନ ଓ ସ୍ୱପ୍ନ।

ଶହେ ପୁଅ ନୁହେଁ
ଲକ୍ଷେ ତାରା ନୁହେଁ
ବରଂ କୁଆଁତାରାଟିଏ ସକାଳର
ଫୁଟୁ ଥାଉ ପ୍ରତି ଅଗଣାରେ
ତା' ମନରେ ଥାଉ ସମର୍ପଣର ଝଲକ
ଆପଣେଇ ନେବାର ରତ୍ନଚକ୍ର
ହସି ହସେଇବାର ମନ୍ତ୍ର।

ଏକବିଂଶ ଶତାବ୍ଦୀର ସିନ୍ଦୂରାରୁ
ବାଳସୂର୍ଯ୍ୟ ଡେଇଁପଡୁ
ଆକାଶର ଅନ୍ଧାର ଛାତିକୁ
ଏ ମଣିଷ ବଞ୍ଚୁ
ମଣିଷ ଭାବରେ;
ହସୁ ନିର୍ମଳ ଝରଣା ପରି
ପାହାଡ଼ ଛାତିରେ
ଗଛ/ଫୁଲ/ଚଢ଼େଇ ମେଳରେ ।

**ରାଜ୍ୟ ସଚିବାଳୟ, ଭୁବନେଶ୍ୱର**

# ଅନ୍ୟ ଏକ ପୃଥିବୀର ନକ୍ସା

ଶ୍ରୀ ରମାକାନ୍ତ ରାଉତ

ଫେରେଇ ନିଅ ଏ ପୃଥିବୀ କି
ଭଗବାନ !
ପୁଣି ଥରେ ନୂଆ କରି ସର୍ଜନା କର
ଶୁଭ୍ର ସୁନ୍ଦର ଏକ ପୃଥିବୀ,
ଯୋ'ଠି ନ ଥିବ ନର୍କର ଆବର୍ଜନା
ସାଲୁବାଲୁ ମଣିଷଙ୍କ ଭେଳା
କଙ୍କାଳସାର, ଶେଥା ମୁହଁ, କୋଟରଗତ ଆଖି
ଭୋଦୁଅ ଖରା ଧାନ କିଆରୀର ଫୁଟନ୍ତା ପାଣିରେ
ଛୋଟ ଛୋଟ ମାଛମାନେ କିଲିବିଲି ହେବା ପରି
ମଣିଷଗୁଡ଼ା ଜଳନ୍ତା ଉହ୍ମେଇ ପରି ପୃଥିବୀରେ
ଶିଝୁଛନ୍ତି; ଆକାଶରୁ ଅଗ୍ନି ବର୍ଷେ
ପାତାଳରେ ଅଣୁଅସ୍ତ୍ରର ବିଷାକ୍ତ ଗ୍ୟାସଉପରେ କୃତ୍ରିମ ଗ୍ରହ
ଉପଗ୍ରହର ଅଦଉତି
ପାଣି ଉପରେ ପେଟ୍ରୋଲ୍ ଜଳୁଛି
ଧସେଇ ଯାଉଛି କୋଉଠି ନିଆଁର ସୁଅ ସହର ମଝିକି
ଅର୍ଦ୍ଧରାତ୍ରେ ସୁପ୍ତ ନରନାରୀ, ଶିଶୁ, ବୃଦ୍ଧ, ଯୁବା
ଜୀଅଁନ୍ତା ସମାଧି ତାଙ୍କ ସେ ପ୍ରଳୟ ପ୍ରୟୋଧି ଜଳରେ ।

ସବ୍‌ମେରିନ୍, ଟ୍ୟାଙ୍କର, କମାଣ ଗର୍ଜୁଛି
ଉପସାଗରୀୟ ଯୁଦ୍ଧର ବିଭୀଷିକାରେ
କ୍ଷୟିଷ୍ଣୁ ପୃଥିବୀ କାନ୍‌ସର ରୋଗରେ ପୀଡ଼ିତା,
ଝୁଣୁଛନ୍ତି ତାକୁ ସାଢ଼େ ପାଞ୍ଚ ଶହ କୋଟି ସଗର ସନ୍ତାନ
ବେରିବେରି, ରିକେଟ୍‌ରେ ଦରମଲା ମଣିଷର ହାଡ଼ମାଳ ।

ଟାଙ୍ଗର ଏ ପଥୁରିଆ ଭୂଇଁରେ କଅଁଳୁନି କୁଶ
ଥୁଣ୍ଟା ଗଛ ଲଣ୍ଡା ପାହାଡ଼ର ଧାଡ଼ି ବିବର୍ଣ୍ଣ ପାଣ୍ଡୁର
ନିଷ୍ଫଳା ନିର୍ଜଳା ପୃଥ୍ୱୀ ବନ୍ଧ୍ୟା ପାଲଟିଛି;
ଗାଈ ଚିରରୁ ଝରୁ ନାହିଁ କ୍ଷୀର, ଆଉଟୁ ପାଉଟୁ ବସ୍ତା
ପୃଥିବୀ ଗରଭୁଁ ସବୁ ରତ୍ନ ଲୁଟି ଫମ୍ପା କଲେ ତା' ଭଣ୍ଡାର
ରତ୍ନାକର ନିଃସ୍ୱ ଓ ଫକଡ଼
ଶସ୍ୟମୟୀ ବସୁନ୍ଧରା, ମରୁମୟ
ଜଙ୍ଗଲ ନିଝାଡ଼, ଗୋଟେ ଅଧେ କାଁ ଭାଁ ଗଛ
ଆକାଶରୁ ବର୍ଷେ ନାଇଁ ନିୟମିତ ବର୍ଷା
ଓଜୋନ ସ୍ତରରେ ଫାଟ, ମାଡ଼ି ଆସେ ବାଇଗଣି ରଶ୍ମି
କୋଉ ଦିନ ମେରୁ-ବରଫ ତରଳି ସମୁଦ୍ର ଆସିବ ମାଡ଼ି
ପ୍ରଳୟ ପ୍ରୟୋଧି ଜଳେ ଉବୁ ଟୁବୁ ଏ ମଣିଷ
ମିଶି ଯିବ ଜଳାର୍ଣ୍ଣବେ ଅଥଳ ସମୁଦ୍ରେ।

ଏବଂ ପୁଣି କେବେ ତମେ ସର୍ଜନା କରିବ ଏକ ନୂଆ ପୃଥିବୀ
ନୂଆ ବସ୍ତି, ନୂତନ ସମାଜ, ଜଙ୍ଗଲରେ ଭରପୂର
ଶ୍ୱାପଦ ସଂକୁଳ, ଅଗ୍ନାଅଗ୍ନି ବନସ୍ତରେ ପୁଣି ଥରେ
ଆର୍ଯ୍ୟଋଷି କଣ୍ଠରୁ ଝଙ୍କୃତ ହେବ ବେଦର ଓଁକାର ଧ୍ୱନି
ଚଉଦିଗ କଂପିଯିବ ଗହ ଗହ ତାନେ
ମହ ମହ ଫୁଲ ବାସ୍ନା ଚହଟିବ
ଶତାୟୁ ମଣିଷ ହେବ ଶତାବ୍ଦୀ ପୁରୁଷ।

ସେଇ ଦିନକୁ ପ୍ରତୀକ୍ଷା ଭଗବାନ!
ଏମିତି ଉଜୁଡ଼ା ଉଜୁଡ଼ି ନ କରି
ବରଂ ସଜାଡ଼ି ଦିଅ ସୃଷ୍ଟିକି,
ସେଇ ସ୍ନିଗ୍ଧ ସୁନ୍ଦର ସକାଳ
ମୁକ୍ତ ଅଙ୍ଗନ, ଦଲକାଏ ହେମାଳ ପବନ
ସବୁଜ ସ୍ୱପ୍ନ, ଫୁଲ ଫଳ ଭାରେ ଅବନତ
ମକ୍ଷୀ ପକ୍ଷୀ ସଂଗୀତରେ ଜୁଡୁବୁଡୁ
ଉଦୀୟାନ୍ ସୂର୍ଯ୍ୟଙ୍କର ସୁନେଲି କିରଣଜାଳେ
ଓଁକାର ଧ୍ୱନିରେ ଧୁଆ
ସୁନ୍ଦର ସକାଳ ସନ୍ଧ୍ୟା
ପ୍ରେମ ସ୍ନେହ ମୈତ୍ରୀବନ୍ଧା ମଣିଷ ସକାଶେ
ଏମିତି ସୁନ୍ଦର ଏକ ନୂତନ ପୃଥିବୀ ଲୋଡ଼ା,
ଭଗବାନ, ଧର ତମ ଚିତ୍ରତୂଳୀ ଆଉ ଥରେ
ଆଙ୍କିବାକୁ ସବୁଜ ସାକ୍ଷର।

**ସଂଯୋଜକ,**
**ଜନସଂଖ୍ୟା ଶିକ୍ଷା ବିଭାଗ,**
**ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର,**
**ଓଡ଼ିଶା, ଭୁବନେଶ୍ୱର**

# ଆମେ କ'ଣ ଜଡ଼ ?

ଚୌଧୁରୀ ସଂଯୁକ୍ତା ଷଡ଼ଙ୍ଗୀ

ପଞ୍ଚଭୂତେ ଗଢ଼ା ଏହି ପୃଥ୍ୱୀ
ଆକାଶ, ପବନ, ଜଳ, ଅଗ୍ନି ଆଉ ମାଟି
ଏ ସମସ୍ତ ଜଡ଼ତା —

ହେଲେ ସର୍ବେ ଏକ ଏକ ଶକ୍ତିର ଆଧାର
ନିଜ ଗୁଣେ ସ୍ୱାଭିମାନୀ ସର୍ବେ
ସ୍ୱଭାବରେ ସ୍ଥିର ଓ ନିଶ୍ଚଳ।

ହେଲେ ସ୍ୱାଭିମାନୀ ମଣିଷ ଜାତିଟା
ସବୁ ଜାଣି ମଧ ସ୍ଥିର ନୁହେଁ
ଶରୀର ତା' ପଞ୍ଚଭୂତେ- ପଞ୍ଚମନେ ଗଢ଼ା,
ସଦା ଅସ୍ଥିର ଚଞ୍ଚଳ।

କେତେ ଆଦର୍ଶ- ନୀତି ଓ ନିୟମ
ବଦଳାଇ ପାରି ନାହିଁ ତାକୁ କେହି
ଯାହା ପାଇଁ ଗଢ଼ା ଏତେ ଆଇନ ଶୃଙ୍ଖଳା
ଶଗଡ଼ ଗୁଳାରେ ଚାଲିବାକୁ ଚାହେଁ ନାହିଁ ସିଏ
ସ୍ୱପ୍ନ ତା'ର ନିତି ନୂଆ
କିଛି କିଛି ପରିବର୍ତ୍ତନର।

ନିଜ ସ୍ୱାର୍ଥ ପାଇଁ ଆଉ କେହି
ପଡ଼ିଯାଉ ବଳି- ଶୋଚନା ନାହିଁ
ସ୍ୱପ୍ନ ତା'ର ସୁନାର ହରିଣ
ଯା' ପାଇଁ ମା' ଧରିତ୍ରୀର ରୂପ
ବିଷଣ୍ଣ ଓ ବିମଳିନ

କଟାଯାଏ ନିତି ବଣ ଜଙ୍ଗଲ ପାହାଡ଼
ରୂପ ନିଏ ଚିକ୍‌ମିକ୍ ସ୍ୱପ୍ନର ତ୍ରିତଳ ପ୍ରାସାଦ।

ଧରିତ୍ରୀ ସେ, 'ମା' ବୋଲି ସହିଯାଏ ସିନା
ଆଉ ଏଠି, ଧରିତ୍ରୀର କନ୍ୟା
ମାତୃଜାତି, ନାରୀଜାତି ଅବିଚ୍ଛେଦ୍ୟ
ଅଙ୍ଗ ମଣିଷର —

ଉଚ୍ଚ ସ୍ୱରେ କରେନି ବାରଣ
ବନ୍ଦ କର ବନ୍ଦ କର
ଧରିତ୍ରୀ ପରେ ଏ ଅତ୍ୟାଚାର।

ହେଲେ ନିଜ ପାଇଁ ଦାବୀ ଆଜି ତା'ର
ଆଇନତଃ ସମ ଅଧିକାର
ଆଜି ଏଠି ନାରୀ ପରେ ନାରୀ
ସିନା କରେ ଅତ୍ୟାଚାର
ସବୁ ଜାଣି ଏ ମଣିଷ ଅସ୍ଥିର ଚଞ୍ଚଳ।

ସମାନ ନୁହେଁ ଆକାଶ ପବନ କି ପାଣି
କେହି ନୁହେଁ କାହା ସମତୁଲ
ମହନୀୟା ଏ ଧରିତ୍ରୀ ମାଟି ମାଆ
ଯେ ନିଜ ସ୍ୱଭାବେ ସଦା ସ୍ଥିର ଓ ନିଶ୍ଚଳ
ରକ୍ଷା କର ପ୍ରକୃତିର ଅମୂଲ୍ୟ ଭଣ୍ଡାର
ହୁଅ ସୁସ୍ଥ, ନିରାମୟ
ବଞ୍ଚି ରୁହ ମାଆକୋଳେ ପରମ ଆହ୍ଲାଦେ।

**ଅଧ୍ୟାପିକା,**
**କେ. ବି. ଡି. ଏ. ଭି. କଲେଜ,**
**ନିରାକାରପୁର**

# ଆମେ ଖୋଜୁ ସ୍ୱାଦ ଅମୃତର

ଶ୍ରୀମତୀ କଳ୍ପନା ସାହୁ

ଆମେ ସବୁ ବଂଶଧର ଆଗାମୀ କାଲିର
ଜୀବନ୍ତ ଫସିଲ୍ ଅବା ମଶାଣି ଭୂଇଁର !
ଆମ ଦେହେ ଭରା ଖାଲି କଳଙ୍କର ଭାର
ଅବାଞ୍ଛିତ ଅନାହୂତ ସଗର ବଂଶର
ତୋ ବକ୍ଷର ଶିଶୁ ଆମେ ଅସଂଖ୍ୟ ପ୍ରଶ୍ନର
ଆମେ ସବୁ ବଂଶଧର ଆଗାମୀ କାଲିର ।

ସୃଷ୍ଟି ଶେଷେ ଧରିନେଲୁ ବକ୍ଷରେ ତୋହର
ମନୁଷ୍ୟରେ ଦେଇ ଶ୍ରେଷ୍ଠ ଜୀବ ଅଧିକାର
ଆନ ଜୀବ ଜଗତର ବୁଡ଼ାଇଲେ ଭେଳା
ନିଜ ବଂଶ ବିସ୍ତାରଣେ ନ କରିଲେ ହେଳା
ହାୟରେ ଆଶ୍ଚର୍ଯ୍ୟ ଏ କି ବିଧିର ବିଧାନ
ନିଜେ ନିଜେ ହୁଏ ନିଜ ଧ୍ୱଂସର କାରଣ ।

ଆମେ ସବୁ ବଂଶଧର ଆଗାମୀ କାଲିର
ଆମେ ଶୁଣୁ ଦୀର୍ଘଶ୍ୱାସ ତୀବ୍ର ହତାଶାର
ବନ୍ୟପ୍ରାଣୀଙ୍କର ଆହା ତତଲା ନିଃଶ୍ୱାସ
ଥୁଣ୍ଟାଗଛେ ଖାଲି ବହେ ଲହୁର ବତାସ
ବସନ୍ତେ କୋଇଲି ଆଉ କରେ ନାହିଁ ଗାନ
କୁମ୍ଭାଟୁଆ ଡାକେ ନାହିଁ ମନେ ଧରି ମାନ
ଚକୋରୀ କାନ୍ଦେନି ଆଉ ଚନ୍ଦ୍ରର ମୃତ୍ୟୁରେ
ସଭିଙ୍କ ବୁକୁରେ କୋହ ଦୁଃଖ ଯନ୍ତ୍ରଣାରେ ।

ପାରୁନି ସମାଜ ଯଦି ଜାଣି ନିଜ ଦୋଷ
ଚେତାଇଦେ ଦେଇ ତା'ରେ ସତର୍କ ସନ୍ଦେଶ
ଶୁଭ ଶଙ୍ଖ ଥରେ ବାଜୁ ଏକଇ ସନ୍ତାନେ
ଦ୍ୱିତୀୟ ପୂର୍ବରୁ ପୂର୍ଣ୍ଣଚ୍ଛେଦ ପଡୁ ମନେ
ସବୁଜିମା ଭରିଯାଉ ଏ ଧରା ବକ୍ଷରେ
କୋଇଲି ପଞ୍ଚମେ ଗାଉ ପତ୍ର ଗହଳରେ
ସୀମିତ ସଂସାରେ ଅଛି ଅସୀମ ଆନନ୍ଦ
ଆମେ ଖୋଜୁ ଜୀବନରେ ଅମୃତର ସ୍ୱାଦ।

**ଜନସଂଖ୍ୟା ଶିକ୍ଷା ବିଭାଗ,**
**ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର,**
**ଓଡ଼ିଶା, ଭୁବନେଶ୍ୱର**

# ପ୍ରାୟଶ୍ଚିତ

ଡଃ ଅମରେନ୍ଦ୍ର ପ୍ରସାଦ ଗିରି

ଛଅଟି ପିଲାର ବାପ ଲେଖୁଛି କବିତା —
''ଲୋଡ଼ା ନାହିଁ ଅଧିକ ଯେ ଗୋଟିଏ ପିଲାରୁ
ଲୋଡ଼ିଲେ ଭୋଗିବ ସିନା ଦୁଃସହ କଷଣ
ଏ କି ଛଳନାର କଥା, ଆତ୍ମପ୍ରବଞ୍ଚନା
କବି ହେଇ ଦେଖନାହିଁ ସ୍ୱପ୍ନ ଅହେତୁକ
କର ତୁମ ପିଲାଙ୍କର କାମ
କି ଲାଭ ମିଳିବ ତମ କବିତା ପଢ଼ାରୁ
ଦୋହରାଇ ଅସୁମାରି ମିଛର ପୃଷ୍ଠାକୁ
ନିର୍ଲ୍ଲଜ ଓ ନିର୍ବିକାର ଭାବେ।''

ଭାଙ୍ଗିଗଲା ସ୍ୱପ୍ନ ମୋର ଶ୍ରୀମତୀଙ୍କ
କଡ଼ା କଡ଼ା ମୋହ ମୁଦ୍‌ଗରରେ
ଅନର୍ଗଳ ସେ ଚାଲିଛି ପୂର୍ଣ୍ଣଚ୍ଛେଦ ନାହିଁ ।
''ଚେମିର ଦିହରେ ତାତି ଖଇ ଫୁଟୁଅଛି
ଦୁଇ ଦିନ ହେଲା ମନ୍ଦେ ପାଣି ବି ପିଇନି
କହି କହି ଥକିଲିଣି ଓଷଦ ଟିକିଏ ପାଇଁ
କବିତା ଲେଖାକୁ ତର କିମିତି ମିଳୁଛି ?

ସାବିର ନାକରୁ ବହେ ଗଙ୍ଗା ଯମୁନା ଧାର
ମେଙ୍କି, ପିଙ୍କି, ରିଙ୍କି, ଜଲି ସର୍ଦ୍ଦିକାଶେ
ଡଆପି ତ ରାତି ଦିନ ଘର ଦୋହଲୁଛି
ପାଠନାହିଁ ଶାଠ ନାହିଁ ଖାଲି ଧୂମମସ୍ତ

ରାତି ନ ପାହୁଣୁ ନିତି ମହାଭାରତର ପର୍ବ
ଜାଣିବା କଠିଣ କିଏ ଶତ୍ରୁ ମିତ୍ର ପକ୍ଷ
ତୁମ ପରିଚୟ କିନ୍ତୁ ମାତୁଳ ଶକୁନି।''

ଶ୍ରୀମତୀଙ୍କ ବାକ୍ୟବାଣ ଭେଦିଲା ମୋ ବୁକୁ
ତୀର ପରି ଗଳିଗଲା ନିର୍ମମ ଭାବରେ
ଭାବିଲି ହାୟରେ ମୋର ଏ ଫଟା କପାଳେ
ଏମିତିକି ଲେଖା ଥିଲା ହିନସ୍ତା ହେବାକୁ
ବହୁ କୁଟୁମ୍ବୀରେ ଦୁଃଖ ଅଶାନ୍ତ ଜୀବନ
ଗୋଟି ଗୋଟି ଛଅ କନ୍ୟା ଆଣି ଏ ଜଗତେ
ତଥାପି ଆସିଲା ନାଇଁ ପୁତ୍ରମଣି ଘରେ।

କି ଲୋଡ଼ା ତହିଁରେ ଖାଲି ମୋହ, କୁସଂସ୍କାର
ଏମାନେ କି ଊଣା କେଉଁ ପୁଅ ତୁଳନାରେ ?
ଧିକ୍ ଧିକ୍ ମୁଁ କି କଲି କେଡ଼େ ଅପରାଧ
ଅକାରଣେ ଜନ୍ମ ଦେଲି ଏତେ ସନ୍ତାନଙ୍କୁ
ଦାନା ମୁଠେ, କନା ଖଣ୍ଡେ ଦେଇ ପାରୁ ନାହିଁ
ପାଠ କଥା କେ ପଚାରେ, ଦିହ ବାଧିକିରେ
ଔଷଧ ଟୋପେ ମିଳୁନି।
କି ଅଧିକାର ଅଛି ମୋ ଜନମ ଦେବାକୁ
ପିମ୍ପୁଡ଼ି ଭେଳାର ପରି ଏତେଗୁଡ଼େ ପିଲା ?
ମୁଁ କରୁଛି ମୋ ପାପ, ମୋ କୁକର୍ମର
ପ୍ରାୟଶ୍ଚିତ ଜୀବନ ତମାମ।

# ହେ ବନ୍ଧୁ ଜୁଲାଇ ଏଗାର !

ଶ୍ରୀ ସଂଜୀବ କୁମାର ପ୍ରଧାନ

ହେ ବନ୍ଧୁ ଜୁଲାଇ ଏଗାର !
ନୁହଁ ତୁମେ ସାଲ, ସନ, ଦିନ ଅବା ବାର
ନୁହଁ ତୁମେ ପ୍ରଚାର ପତ୍ର କି ପୋଷ୍ଟର
ବହି ପୃଷ୍ଠାରେ ସୀମିତ ଦିନଟିଏ ମାତ୍ର ।

ତୁମେ ଜାତିର ନଉକା
ଆଣିଛ ନୂତନ କ୍ରାନ୍ତିର ବାର୍ତ୍ତା
କରିବାକୁ ଦୂର ଅମା ଅନ୍ଧାର
ଆଗେଇ ନେବାକୁ ନନ୍ଦିଘୋଷ ଏ ଜାତିର ।

ପୁଣି ଗୋଟାଏ ବର୍ଷ ପରେ
ଆସିଛ ନୂଆ ରୂପ ପୁଣି ନୂଆ ରଙ୍ଗରେ
ପୁରୁଣା କଥାକୁ ଦୋହରାଇ ଦେଇ
ବହୁଜନ ଜଞ୍ଜାଳରୁ ମୁକ୍ତି ଦେବା ପାଇଁ ।

ଆହା ତୁମେ କେତେ ଆପଣାର
ଭୁଲି ନାହିଁ ଦୁର୍ଦ୍ଦଶା ଆମର
କେତେ ଦିନ ଆଉ ଆମ ହାତ ଧରି
ଚେତେଇବାର ପ୍ରଚେଷ୍ଟା ରଖିବ ଜାରି ।

ଏ ଜାତି ଜନକ ଦିନେ ଶୁଣାଇଥିଲା ତା’ ବ୍ୟଥା
ବହୁ ଜନ କଳଙ୍କର ଅପବାଦ କଥା
କାହିଁ ତ ସେ କଥା ପଶିଲାନି କାନେ
ତାକୁ ତ ମନେ ରଖି ପାରିଲୁନି ଦିନେ ?

ମନେପଡ଼େ ସେ ଦିନର କଥା
ଏମିତି ତୁମେ ଆସିଥିଲ ଏକା ଏକା
କରିଥିଲୁ ଶପଥ ତୁମରି ପାଶେ ସଭିଏଁ
ଗଢ଼ିବାକୁ ଛୋଟ ପରିବାରଟିଏ ।

କେବଳ ସେତିକି ନୁହେଁ
ଆହୁରି ବି କରିଥିଲୁ ଶପଥ ସଭିଏଁ
ଦୁଇ ଓଳି ଦୁଇ ମୁଠା ପେଟପୂରା ଖାଇ
ନିରୋଗ ହେବେ ଆମ ଭଉଣୀ ଭାଇ ।

ସଭିଏଁ ହୋଇବେ ସାକ୍ଷର
ନ ରହିବେ କେହି ନିରକ୍ଷର
ରହିବ ନାହିଁ ଭେଦ ପାଠୁଆ, ଅପାଠୁଆର
ସାକାର ହୋଇବ ସ୍ୱପ୍ନ ଗାନ୍ଧି ମହାତ୍ମାର ।

କିନ୍ତୁ ହାୟ ! କୁଆଡ଼େ ଗଲା ସେ ଶପଥ
ଯାଇ ଚାଲି ଅନେକ ବର୍ଷ ଅନେକ ପଥ
ଆଜି ବି ହେଉଛୁ ଆମେ ହନ୍ତସନ୍ତ
ଜନ ବିସ୍ଫୋରଣ ହେତୁ ଆମେ ସର୍ବସ୍ୱାନ୍ତ ।

ବାଟେ ଯାଉ ଯାଉ ବାଟୋଇ ଭାଇ
ଅଙ୍କା ମାରେ ଗଛ ଛାଇରେ ଯାଇ
କାହିଁ ଗଲା ସବୁ କୁଆଡ଼େ ଚାଲି
ଅଙ୍କା ନ ମେଣ୍ଟଇ ବାଟ ଚାଲି ଚାଲି ।

ପାଣି ଟୋପେ ପାଇଁ ଚାତକ ପରି
ଚାହିଁ ଆଖି ପାଣି ଗଲାଣି ମରି
ବିଲବାଡ଼ି ଫାଟି କଲାଣି ଆଁ
ଗରମ ତାତିରେ ଝରୁଛି ନିଆଁ ।

ରୋଗ ବଇରାଗେ କେତେ ଯେ ଛୁଆ
ନିଇତି ମରନ୍ତି ତୁହାକୁ ତୁହା
ରଖିଛି କେ ହିସାବ ତା'ର
ଅନୁତାପ ପାଇଁ ଏହି ପାପର ?

**ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର,**
**ଓଡ଼ିଶା, ଭୁବନେଶ୍ୱର**

# ସରଦେଈପୁର ହାଟ

ଶ୍ରୀ ଅରୁଣ ଚନ୍ଦ୍ର ମହାନ୍ତି

ବାଙ୍କୁଆଳ ଗାଆଁ ବଙ୍କୁଆ ବିକୁଛି
ପଙ୍କୁଆ ମାଛକୁ ଧରି
ଫକ ଫକ ସେଇ କଉ ମାଗୁରକୁ
ଗରାଖ ଗଲେଣି ଘେରି ।୧।

କଳା ମଚ ମଚ ପଠା ବାଇଗଣ
କାଶିଆ ଆଣିଲା ତୋଳି
ସଜ ପରିବାକୁ କିଣିବା ପାଇଁ କି
ସଭିଏଁ ହୁଅନ୍ତି ଭାଳି ।୨।

ଗୋବରା ଥୋଉଛି ଗୋବରା ଚଢ଼େଇ
ଡାକ ଛାଡ଼େ ନିଅ ନିଅ
କିଣିବା ପାଇଁକି ଶଙ୍କରା ସାଥିରେ
ଅଳି କରୁଥିଲା ପୁଅ ।୩।

ବେଲୁନ୍‌ବାଲାଟି ବେଲୁନ୍ ବିକୁଛି
ଟଙ୍କାଏ ଟଙ୍କାଏ ଡାକି
ନାଲି, ନୀଳ ରଙ୍ଗେ ସଜେଇ ରଖିଛି
ମୁହଁରେ ତା' ଫୁଙ୍କି ଫୁଙ୍କି ।୪।

ସର୍ବତ ଦୋକାନ ଖୋଲିଛି ସନେଇ
ଭାଙ୍ଗୁଛି ବରଫ ଖଣ୍ଡ
ଭାରି ନିରିମଳ ହାଟ ପରିବେଶ
ହସି ଉଠେ ହାଟ ଦାଣ୍ଡ ।୫।

ମାଗୁଣି ସାହୁର ଦୋକାନରେ ବସି
ବରା, ଗୁଲୁଗୁଲା ଖାଇ
ଦୂର ଗାଆଁ ଲୋକ ନିଃଶ୍ୱାସ ମାରନ୍ତି
ନଳ କୂଅ ପାଣି ପିଇ ।୬।

ଖଣ୍ଡୁଆଳ ପୁଅ ଖଣ୍ଡୁଆ ବିକୁଛି
ଖଣ୍ଡିଏ ଖଣ୍ଡିଏ ହାଟେ
ହାଟ ଫେରନ୍ତାଙ୍କ ଭିଡ଼ ଜମିଲାଣି
ଗାଆଁ ନଈକୂଳ ଘାଟେ ।୭।

ମୁହଁ ସଂଜବେଳେ ଅଜା ଫେରୁଥିଲେ
ବୁଜୁଳି କାଖରେ ଜାକି
ଅନ୍ଧାର ଆସିଲା ଘରେ ପାଦ ଦେଲେ
ପିଲାଙ୍କୁ ସେ ଡାକି ଡାକି ।୮।

ଚକରା ମକରା ଯାଇଥିଲେ ଦୁହେଁ
ସରଦେଈପୁର ହାଟ
ସେଇଠୁ କିଣିଲେ ମଧୁ ବର୍ଣ୍ଣବୋଧ
ଏଣିକି ପଢ଼ିବେ ପାଠ ।୯।

ସା/ପୋ: ବାଲକାଟି,
ଜି: ଖୋର୍ଦ୍ଧା

# କାହିଁ ?

ଶ୍ରୀ ନନ୍ଦକିଶୋର ସାମଲ

ସୁଆଦିଆ ଜାମୁକୋଳି
କେତେ ଖାଉଥିଲେ
ଗଛରୁ ତୋଳି
ମନେ ପକାନିରେ ଭୋଳି !
ଏଠି ଯେତେ କିଆବୁଦା
ଦିନ ଦି'ପହରେ
କେତେ ଯେ' ନେଉଳ
ଏଠି ମାରୁଥିଲେ କୁଦା ।

ମେଲଣ ପଡ଼ିଆ ତୋଟା
ସେଠି ଥିଲା ଯେତେ
ଆମ୍ବ - ପଣସ
କାହିଁରେ ସେଥିରୁ ଗୋଟା ।

ନଈକୂଳ ତାଳ ବଣ
ତୁ ଦେଖିଥିଲୁ ମୁଁ ତ ଦେଖିଚି
କାଟି ଦେଲେ
କେଇ ଜଣ ।

ପାଚି ଝଡୁଥିଲା କେନ୍ଦୁ
ଝଡୁଥିଲା କେତେ
ଆମ୍ବ, ଖଜୁରୀ
ମନେ ପକାନିରେ ବଂଧୁ !

ପଦା ହେଇଗଲା ତୋଟା
କେଡ଼େ ବଢ଼ିଆ
ସେ କଦମ୍ବ ଗଛ
ରହିଲା ନାହିଁରେ ଗୋଟା ।

ଗଛ ନାହିଁ ନାହିଁ ଛାଇ
ଯୋଉ ଛାଇ ତଳେ
ଚରି ବୁଲୁଥିଲେ
ପଲ ପଲ ଗୋରୁ ଗାଈ ।

କାହିଁ ସେ ମନୁଆ ବଟ
ବଇଶାଖ ମାସ
ଖରା ବେଳରେ
ଗୁଣ୍ଡୁଚି କରନ୍ତି ନାଟ ।

ସବୁ ଆଜି ଶିରୀହୀନ
ଖାଁଆ ଖାଁଆ ଗାଁ
ଖାଇ ଗୋଡ଼ଉଚି
ସତେ ଅବା ଶମଶାନ !

**କୁସୁପୁର, କଟକ**

# ସାନ ନନି ରୁଷିଛି

**ଡାଃ ବିପିନ ବିହାରୀ ହୋତା**

ଆହା ମୋ ପିଆଜ କଷି
ଆମ ସାନ ନନି ବସିଛେ ରୁଷି ଗୋ
ଶୁଣି ମାଆ ବାପା କାନା ଫୁସି। ସଜନୀ ରେ ।୧।

ସୁନା ଦୂବ କେରି କେରି
ଝିଅକେ ଗଲାନ ଚଉଦ ପୂରି ଗୋ
ବିହା ଦରପନ ଦେମା ସାରି। ସଜନୀ ରେ ।୨।

ଉଆଁସେ ଦିଶିଲା ଜନ୍ହ
ଝିଅକେ ଅଠରେ ବିହା ଆଇନ ଗୋ
ନନି ମନ ହେଲା ଛନ ଛନ। ସଜନୀ ରେ ।୩।

ଗାଆଁ ଥି ପଡ଼ିଛେ ହୁରି
ବାପା ମା ନିଗଲା ଝିଅ ଗୁହାରୀ ଗୋ
ବିହା ହେବା ପାଠ ପଢ଼ା ସାରି। ସଜନୀ ରେ ।୪।

# ଗଡ଼ି ଗଡ଼ି ଗଲା ଖଡ଼ି

ଶ୍ରୀ ଅଚ୍ୟୁତାନନ୍ଦ ସାମଲ

ଗଡ଼ି ଗଡ଼ି ଗଲା ଖଡ଼ି,
ପିଲାଠାରୁ ବୁଢ଼ା ପାଠ ପଢ଼ିଥିଲେ,
ଦେଶ ନାଆଁ ଯାଏ ବଢ଼ି ।୧।

ପିଢ଼ାରେ ଫଳିଛି ଲାଉ,
ଯଉତୁକ ସବୁ ଚୁଲିକି ଯାଉ,
ଆଣିବା ପାଠୋଇ ବୋହୂ ।୨।

ଆକାଶେ ହସଇ ଚାନ୍ଦ,
ଦୁଇଟି ପିଲାରେ ଘର ଆନନ୍ଦ,
ଅଧିକ ସବୁଠୁଁ ମନ୍ଦ ।୩।

କେହି ନୁହେଁ ସାନ ବଡ଼,
ପୁଅ କିମ୍ବା ଝିଅ ଦୁଇଟିକୁ ନେଇ,
ଛୋଟ ପରିବାର ଗଢ଼ ।୪।

ନଈ ପାଣି ଗଲା ମାଡ଼ି,
ବେଶୀ ମଣିଷରେ ଦେଶେ ଦଶା ପଡ଼େ,
ଅଳପରେ ଯାଏ ଛିଡ଼ି ।୫।

ଓଳି ପାଖେ କୋଳି ଗଛ,
ଗୋଟିଏ ମାଟିର ମଣିଷ ଆମେରେ,
ଦେଶ-ଜାତି-ଭାଷା-ଗଛ ।୬।

ଗାଆଁଟି ଆମର ମାଆ,
ଭାଇ ଭାଇ ଭଳି ଚଳି ପାରୁଥିଲେ,
ମିଳେ ଯିଏ ଖୋଜେ ଯାହା ।୭।

ରୋଗ ପଳାଇବ ଡରି,
ପରିବେଶ ସଫାସୁତୁରା ରଖିଲେ,
ରାଜିବ ସରଗ ଶିରୀ ।୮।

ଯେତେ ନଈ ସେତେ ବାଙ୍କ,
ଅଳସକୁ ଫାଙ୍କି ନିଜ କାମେ ଲାଖି
ଜୀବନର ଛବି ଆଙ୍କ ।୯।

ଗଢ଼ି ଗଢ଼ି ଗଲା ଖଡ଼ି,
ସଭିଏଁ ସାକ୍ଷର ହେଲେ ଯାଇ ହେବ
ନୂଆ ଏକ ଦେଶ ଗଢ଼ି ।୧୦।

**ସା:/ପୋ: ଭଣ୍ଡାରିପୋଖରୀ,**
**ଜି: ଭଦ୍ରକ-୭୫୬୧୨୦**

# ଯାଜ୍ଞସେନୀ:

# ସେଦିନ ଓ ଆଜି

ସୁଶ୍ରୀ ସଙ୍ଗୀତା ମିଶ୍ର

ଅସ୍ତମିତ ଅତୀତର ଅନ୍ଧାର ଇଲାକାରୁ
ସ୍ମୃତିର ପରିଚିତ ପାଦ ଶବ୍ଦ
ଶୁଭିଗଲା ଅଚାନକ ତା' ହାଇ ମାରିବା ଆଗରୁ
ଅଭିମାନୀ ଯାଜ୍ଞସେନୀ
ବର୍ତ୍ତମାନର ବେଳାଭୂମିରୁ
ସ୍ମୃତି ସବୁ ସାଉଁଟି ଦେଖେ ତ
ସେଇ ସ୍ମୃତି, ସେଇ ଅନୁଭୂତି
ସବୁ ଏଠି ଗତାନୁଗତିକ
ସେଇ ବୀଣା, ସେଇ ତାର,
ନୂଆ ଖାଲି ବୀଣାର ଝଙ୍କାର।

ଆଜି ବି ଦିଶୁଛି ଏଠି
ହସ୍ତିନାର କୁରୁସଭା ଦୃଶ୍ୟ
ବିଗତ ସେ ଶତାବ୍ଦୀର
ଲାଞ୍ଛନାର ଚରମ ମୁହୂର୍ତ୍ତ।
ଆଜି ବି ଭେଟୁଛି ତାକୁ
ନିୟତିର ନିଷ୍ଠୁର ନିର୍ଯ୍ୟାସ
ସମୟର ପୁରୁଣା କ୍ଷତରୁ
ଏ ପର୍ଯ୍ୟନ୍ତ ଝରୁଛି ରକତ।

ଇତିହାସ ଲେଉଟୁଛି
ଏମିତି ଲେଉଟୁଥାଏ
ସ୍ମୃତିର କବର ତଳେ ଦ୍ରୌପଦୀ ତ ହଜିଯାଏ
ଭାସିଯାଏ ଅସ୍ତିତ୍ୱ ତା ଅଶ୍ରୁର ବନ୍ୟାରେ
ସବୁଠି ତା' ନିଶ୍ୱାସରୁ ଶୁଭୁଥାଏ ପ୍ରତିଧ୍ୱନି
ହାର୍, ଜିତ୍ ଲାଗିଥାଏ, ସବୁଠି ତ
ପ୍ରତାରଣା, ପ୍ରତିଶୋଧର ଆଦିମ ଯୁଦ୍ଧ
ସବୁଠି ଶେଷରେ ତା' ପରାଜୟ
ନିଜକୁ ହିଁ ହାରିଥାଏ ଯାଜ୍ଞସେନୀ
ଜୀବନର ପଶାପାଲି ପରେ ।

**ଘର ନଂ-ଟାଇପ୍ ଭି-ଏ ୧୦/୪,**
**ୟୁନିଟ୍-୨, ଭୁବନେଶ୍ୱର- ୯**

# ବିପ୍ଳବ

କୁମାରୀ ନିବେଦିତା ରାଉତ

ତୁମ ପ୍ରମୋଦ ଉଦ୍ୟାନର ସୁନା ପକ୍ଷୀଟି
ଆଜି ଅରାଏ ଆଲୁଅ ପାଇଁ ଉଦ୍‌ଗ୍ରୀବ,
ଏ ଅନ୍ଧାର, ଅପନ୍ତରା, ଗମ୍ଭୀରାରେ
ସେ ଆଉ ବନ୍ଦୀ ହୋଇ ରହି ପାରିବନି;
ମୁକ୍ତି ଲୋଡ଼ା, ମୁକ୍ତି ଖାଲି, ମୁକ୍ତ ପରିବେଶ।

ସେ ନିଷିଦ୍ଧ ଗଛର ଫଳ ଚାଖିଛି
ତମ ଆଦେଶର ତିନି ଗାର ଲଙ୍ଘନ କରି;
ବରଂ ମୃତ୍ୟୁ ଭଲ, ନର୍କ ଭଲ, ହଳାହଳ ଭଲ,
ନନ୍ଦନ କାନନର ସେ ସ୍ୱର୍ଗ ଶିରୀଠାରୁ,
ପାପ ବରଂ ଢେର ଭଲ
ପାଶବିକତାର ଏଇ
ଅଜ୍ଞାନତା ଅନ୍ଧାକାରେ ଦରାଣ୍ଡି ହେବାଠୁଁ
ଚିଡ଼ିଆଖାନାର ଦ୍ୱିପଦ ଜାନୁଆର ପରି
ଦର୍ଶକଙ୍କ ଅଶ୍ଳୀଳ ଇଙ୍ଗିତ ଓ
ଉପହାସରେ ବଧିରା ଜୀବନଠୁଁ
ବରଂ ଭଲ ଯାଯାବର ଉଦ୍‌ବାସ୍ତୁ ଜୀବନ।

ସେ ମୃତ୍ୟୁରୁ ପାଇଛି ସମ୍ବିତ୍,
ପାପ ପଙ୍କରୁ ପାଇଛି ପ୍ରଜ୍ଞା,
ଆଉ ଅବାଧ୍ୟତାରୁ ସ୍ୱାଧୀନତା;
ସେ ଆଉ ତମ ହାତ କଣ୍ଢେଇ ନୁହେଁ

ତମ ପାପ କଳଙ୍କରେ ଘାଣ୍ଟି ହୋଇ
କଣ ଘରେ ବନ୍ଦୀ ହେବା ଲାଗି ।

ଅନ୍ୟାୟ, ଅତ୍ୟାଚାର ଓ ଭ୍ରଷ୍ଟାଚାରର ମୁଖା ଖୋଲି
ପୁରୁଷର ବାଧାବନ୍ଧନକୁ ଚୂରମାର କରି
ସବୁ ମାୟା ମମତାକୁ ଉଦ୍‌ଭିନ୍ନ କରି
ଜଡ଼ତାକୁ ପଦାଘାତ କରି
ସେ ଚାଲିବ ଆଗକୁ ଆଗକୁ ।

ଲକ୍ଷେ ମହିଷା କି ସହସ୍ର ରକ୍ତବୀର୍ଯ୍ୟ
ରୋକି ପାରିବେନି ତା’ ପଥ,
ରୋଧି ପାରିବେନି ତା’ ଗତି
ଝଡ଼ର ଝଙ୍କାର ସୃଜି
ବିପ୍ଳବର ମନ୍ଦ୍ରଧ୍ୱନି ତୋଳି
ଜାଗୃତି ମଶାଲ ହାତେ ସେ ଚାଲିଛି
ଦୃପ୍ତପଦେ ଶକ୍ତି ସଂହାରିଣୀ ।

# ସମୟ ଅସମୟ

ଶ୍ରୀ ଭିକାରୀ ଧଳ

ସେମାନେ ଯେ ଲେଖିଥିବେ ସେତେବେଳେ ଜୀବନର କଥା,
ଗଛଲତା, ପଶୁପକ୍ଷୀ, ପାଣି ଆଉ ପବନ କବିତା,
ସେ ବେଳର ରାଜନୀତି, ଅର୍ଥନୀତି, ଧର୍ମନୀତି ଶାସ୍ତ୍ର,
ରଣନୀତି, ରାଜଦ୍ରୋହ ପ୍ରଜା ଆନ୍ଦୋଳନ,
ସେ କାଳର ଉତ୍‌ଥାନ ପତନ ।୧।

ଆଉ ମଧ ଲେଖିଥିବେ ସେ କାଳର ବଢ଼ି ଓ ମରୁଡ଼ି
ଦୁର୍ଭିକ୍ଷ ବା ମହାମାରୀ, ଅନାହାର ମୃତ୍ୟୁ
ଲୋଭ, ମୋହ, ଜନ୍ମ ଓ ଯାତନା, ହିଂସା ପ୍ରତାରଣା
କେତେ କଥା ଦେଖିଥିବେ, ଭାବିଥିବେ, ଲେଖିଥିବେ
ସେ କାଳର କବି, ଓଠେ ରଖି ଲେଖନୀର ମୁଣ୍ଡ
ଆକାଶକୁ ଚାହିଁ କରିଥିବେ କେତେ ଯେ କଳ୍ପନା ।୨।

ଲେଖିଥିବେ ତାଳପତ୍ର, ଭୂର୍ଜପତ୍ର ଦେହେ
ବେଦ, ମନ୍ତ୍ର, ତନ୍ତ୍ର ଆଦି ଭାରତୀୟ ତତ୍ତ୍ୱ
ଜୀବନ୍ତ ପ୍ରକୃତି ସଙ୍ଗେ ମିଶିଥିବେ, ବସିଥିବେ, ହସିଥିବେ,
କଥା କହିଥିବେ ।

ବିଜ୍ଞାନର ବୀଜମନ୍ତ୍ର ହାତରେ ତଉଲି
ଭବିଷ୍ୟତ ଜଗତକୁ କଳି ବାରି ନେଇଥିବେ ।୩।

ସେମାନେ ବି ଦେଖିଥିବେ ଦୃଶ୍ୟ କେତେ,
ଆଜି ଯାହା ଲାଗୁଛି ସପନ

ଶୁଣିଥିବେ ପାଣି ଏବଂ ପବନର ସ୍ୱର
ବସିଥିବେ ଆକାଶରେ, ଶୋଇଥିବେ ନିଆଁର ଶେଯରେ
ଦେଇଥିବେ ଚେତାବନୀ ସମୟକୁ
ଋକ୍, ସାମ, ଯଜୁଃ ଓ ଅଥର୍ବ ବେଦ କରି ଉଚ୍ଚାରଣ ।୪।

କବିତା ଲେଖିବା ପାଇଁ ଶବ୍ଦମାନ ସଜାଡ଼ିଲା ପରି
କବି କିଏ ବ୍ୟାପିଥିବେ ଗାଁ ଗଣ୍ଡା ରାସ୍ତା ଓ ସହର
ଭୋଗ ଆଉ ସଂଭୋଗ ବି କରିଥିବେ
ଜୀବନକୁ ପଲ ପଲ ତଉଲି ଥିବେ ତପସ୍ୟା ବା କୃଚ୍ଛ୍ର
ସାଧନାରେ
ଆଙ୍କିଥିବେ ଛବି, ଥାପିଥିବେ ଆପଣାର ପାଦ
ଗୋଟି ଗୋଟି ତରୁ ତୃଣ ଜୀବ ଜଡ଼ କୀଟ ଓ ପତଙ୍ଗ ।୫।

ସେଇସବୁ କାଳ କଥା ଭାବିବାକୁ ହୁଏ,
ଏ କାଳର ରୀତିନୀତି ଦେଖି
ଆତଙ୍କିତ ହେଉଛି ଜୀବନ, ଲେଖିବାକୁ ଓ ଦେଖିବାକୁ
ମନ ଆନ୍ଦୋଳିତ ।
ସମାଜ ଓ ସାମ୍ରାଜ୍ୟର ଦୁଃଖ ବେଳୁ ବେଳ ବଳିପଡ଼େ ।
କି ଥିଲା କି ହୁଏ ଆଜି ପୁରାତନ ନୂତନ ଭିତ୍ତିରେ
ଫେଣ୍ଟାଫେଣ୍ଟି ପାପ ପୁଣ୍ୟ ସଭ୍ୟତାର ନୂଆ ଆଚରଣ ।
ଭାବିବାର ଯୁ ନାହିଁ, ଆପେ ଆପେ ଶୁଖିଯାଏ ଲେଖନୀରୁ ମସି ।
ହତାଶା ଓ ବ୍ୟର୍ଥତାରେ ଦିନ ସରେ କର୍ମକୁ ଆଦରି
ଊର୍ଦ୍ଧ୍ୱନାମେ ଅଧୋଗତି ଲୋଡୁଅଛି ଏ ସଭ୍ୟ ମଣିଷ ।
ନୂତନ ନାମରେ କରି ଯେତେ ମନ୍ଦ କାର୍ଯ୍ୟ
ମୃତ୍ୟୁ ପାଇଁ ସମାଧି ସଜାଡ଼ି ।୬।

ସାମୟିକ ଆନନ୍ଦରେ ମାତି, ପ୍ରକୃତିକୁ ଧ୍ୱଂସକରି
ଚାଲେ ଅକାତରେ
ପୁରାତନ ଭୁଲିଯାଇ ଜଳ, ସ୍ଥଳ, ବାୟୁ କରେ
କଳୁଷିତ ମେଣ୍ଟାଇବ ତା' ରକ୍ତ ପିପାସା ।
ଆଗାମୀ ପୀଢ଼ିର ପଥ କରେ ରୁଦ୍ଧ
ସ୍ୱାର୍ଥ ଆଉ କୁସଂସ୍କାର ଅକ୍ଟୋପାସ୍ କବଳରେ କବଳିତ କରି
ଶାନ୍ତି, ମୈତ୍ରୀ, ପ୍ରଗତିର
ମହାନ୍ ସଂସ୍କୃତିସ୍ରଷ୍ଟ ମହାମାନବର
ଅନନ୍ତ ସାଗର କଚ୍ଛ
ଏ ମହାଭାରତ ।୭।

# ରାତି

ଶ୍ରୀ କୃଷ୍ଣଚନ୍ଦ୍ର ସୁଆର

ଏକ ରାତି ନୁହେଁ ତ
ସପତ ରାତି ।
ସତୀର ପ୍ରତୀକ୍ଷା
କୁଆଁର ପୂନେଇ ରୂପା ଜହ୍ନ ମାମୁଁ
ଜ୍ୟୋସ୍ନାର ଜୁଆର
ଭାଗବତ ଟୁଙ୍ଗୀର ଧର୍ମ ଆଲୋଚନା
କୋମଳମତିର ଏକୋଇଶା
ଭୋଜି ଭାତର ରାତି ।

ହଁ; ଏ ରାତି ଶୁଣୁଛି ଖାଲି
ବୁକୁଫଟା କୋହ
ଆଖିରେ ଆଖିଏ ଲୁହ ଆଉ
ଅଜସ୍ର ହାହାକାର ।

ରୁଟି କପଡ଼ା ମକାନ
ଦୋହଲାଇ ଦେଇଛି
ତା' ଅରୁଣ ସ୍ତମ୍ଭର ଦୁଇ ବାହୁ ।
ଏ ରାତିରେ ଧୁକ୍‌ଧୁଡ଼ି ହୋଇ
ସଢ଼ନ୍ତି ଅନେକେ ଏବଂ ଟଳି ପଡ଼ନ୍ତି ପାହାନ୍ତାରେ
କେତେ ଯେ ସୁରାସାକୀ ମହଲରେ
ଆମୋଦ ପ୍ରମୋଦ ପୁଣି
କେଉଁଠି ତ ଭୋକ ଉପାସିଆ
ଜୀବନରେ ମୃତ୍ୟୁ ପରୱାନା
କି ସକାଳର ସନ୍ଦେଶ ଦେବ ଏ ରାତି ?
ମୃତ୍ୟୁ ନା ଜୀବନର ପୁଷ୍ପିତ ସୁରଭି !

# ମାଟି ପାଣି ପବନରେ ଗଢ଼ା ଏଇ ସଂସାର

ଶ୍ରୀ ନରସିଂହ ମହାପାତ୍ର

ମାଟି ପାଣି ପବନରେ ଗଢ଼ା ଏଇ ସଂସାର
ଉଣା ହେଲେ ଏଥିଁ ଏକ ସୃଷ୍ଟି ହବ ଅସାର
କଟା ହେଉଚି ଜଙ୍ଗଲ କାରଖାନା ବସୁଚି
ପାଣି ପବନକୁ ସଦା କରୁଚି ପ୍ରଦୂଷିତ
ଜୀବଜନ୍ତୁ ମରୁଛନ୍ତି ହଜାର ହଜାର ।୧।

ଫସଲ ନିରୋଗ ଲାଗି ଯେଉଁ ବିଷ ପଡୁଚି
ପାଣିରେ ସେ ଧୋଇ ହୋଇ ନଈନାଳେ ମିଶୁଚି
ଯେ ପିଇଲା ସେଇ ପାଣି ରୋଗ ହେଲା ଅପାର ।୨।

ପରିବେଶ ପାଇଁ ଲୋଡ଼ା ମାଟି ପାଣି ପବନ
ନ ହେଲେ ଉଜୁଡ଼ି ଯିବ ଗଛ ଲଟା ଗୁଳୁମ
ଗଛ ଲତା ବିହୁନରେ ହବ ନାଇଁ ଫସଲ
ଫସଲ ନ ହେଲେ ଶୂନ୍ୟ ହେବ ବିଶ୍ୱ ଭଣ୍ଡାର ।୩।

ପରିବେଶ ରଖିବାକୁ ଦବା କଡ଼ା ନଜର
ଅଭାବ ରହିବ ନାଇଁ ଦେଶସାରା କାହାର
ହସିବ ଜଗତ ହସୁଥିବେ ଜନ ଅପାର ।୪।

# ରସର କେଲି

ଶ୍ରୀମତୀ କମଳା ବିଶ୍ୱାଳ

ରସର କେଲିବୋ–
ତୁପିଥିଲି ବାଉଁଶ କନ୍ଦା ଏ ସୁର୍ ହେଲା ମୁଁଢ଼େ
ବୁଢ଼ା ବୁଢ଼ୀ ଯୁଡେ ଥିଲେ ନାତି ନାତେନ୍ କୁଡେ
ଗୁଟେ ଗୁଟେ ଘରର କୁଟୁମ୍ ଗୁଟେ ଗୁଟେ ପରା
ଚାଷ ନାଇଁକି ବାସ ନାଇଁ ନାଇଁ ଅଟେ ଚରା
ଛ ଖଁଡ଼ି ଡୁଲିପରେ ସଙ୍ଗାତ,
ଟିପ୍‌ରି ଟିପ୍‌ରି ହେଲା କାଏଁ ରସର କେଲିବୋ
ହାଏଁଡ ସରେଇ ଡନ୍‌ଡାନ୍ ସଙ୍ଗାତ
ଅଢ଼ିଆ ସରିଗଲା କାଏଁ ଧୀରେ ଧୀରେ ରେ ।

ରସର କେଲିବୋ–
ଲଟିବୁରୋର୍ ବାହିକ୍ସିରେ ସୁରୁ ସୁରୁ କଣ୍ଟା
ଝାର୍ ପତରା ପର୍‌ଛା ହେଲା ଚାଟେ ନାଇଁ ବୁଟା
ଆଗର ମିତାର୍ କେନ୍ଦୁଚାର କ୍ୟାହୁଁ ପାଏବୁ ପିଲା
ଟୁପା ଟୁପା ମହୁଲ ଟୋଲ ସରଗି ପତର ଟୁଲା
ଡୁଙ୍ଗ୍‌ରୀ ଡୁଙ୍ଗ୍‌ରୀ ବାଂଜି ବେଟି ସଙ୍ଗାତ
ଧାଙ୍ଗରୀ ନାଇଁ ହେଲା କାଏଁ ଧୀରେ ଧୀରେ ରେ ।

ରସର କେଲିବୋ–
ସମଲପୁରୀ ପରଦାଶାଢ଼ୀ ଗୁଟେ ଗୁଟେ ବୁଟି
ଆମର ଭାରତ ଦେଶ ପରେ ମନୁଷ ନବେ କୁଟି
ଆଏଁଖ ମିଟ୍‌କା ମାରୁନ୍ ମାରୁନ୍ ଜନମ ଗୁଟେ ଛୁଆ

ଏନ୍ତା ମନୁଷ୍ ବଢ଼ଲେ ଦେଶେ ଭାସି ଯିମା ବୁଆ
ଯେତେ ସଡ଼କ ଯେତେ ଇସ୍‌କୁଲ ସଙ୍ଗାତ
ଗଢୁଛେ ସରକାର କାଏଁ ରସର କେଲିବୋ
ସବୁଠାନେ କୁଞ୍ଚା ପେଲ୍‌ହା ସଙ୍ଗାତ
ଆହୁରି ଦରକାର କାଏଁ ଧୀରେ ଧୀରେ ରେ ।

**ସମ୍ବଲପୁର ବିଶ୍ୱବିଦ୍ୟାଳୟ,**
**ଜ୍ୟୋତିବିହାର, ବୁର୍ଲା**

# ଲୋକଗୀତରେ ଜନସଂଖ୍ୟା ଶିକ୍ଷା

## (୧) ପୁଚି ଗୀତ

ହଲେଇ ଦେଲି ଚଲେଇ ଦେଲି ପକେଇ ଦେଲି ଗୋଡ଼ି
କି ସୁନ୍ଦର ପାରା ଯୋଡ଼ିକ ଯାଉଛନ୍ତି ଉଡ଼ି।
ଆସ ଆସ ପାରା ଯୋଡ଼ିକ ମୋ ପିଣ୍ଡାରେ ବସ
ଖାଇବାକୁ ଦେବି ତୁମକୁ ନଡ଼ିଆର ରସ ।
ପିଇବାକୁ ଦେବି ତୁମକୁ ପଦ୍ମ ପୋଖରୀ ପାଣି
ଶୋଇବାକୁ ଦେବି ଖଟୁଲି ମାଳି ଘରୁ ଆଣି
ବିଞ୍ଚିବାକୁ ଦେବି ତୁମକୁ ଓଲଟା ବିଞ୍ଚଣି।

| | |
|---|---|
| ପୁଚି ଲୋ ଘୁଞ୍ଚିଯା | ଆସ ଗଛ ପୋତିବା |
| ମୋ ଲୁଗାଟି ଶୁଖିଯା | ଘରକୁ ସଫା ରଖିବା |
| ସାରଙ୍ଗ ବାଡ଼ିକି ଯାଇଥିଲି | ରୋଗଠୁଁ ଦୂରେ ରହିବା |
| ସାରଙ୍ଗ ଯୋଡ଼ିକ ଆଣିଥିଲି | ଛୋଟ ପରିବାର ଗଢ଼ିବା |
| ଅଧେ କଲି ଭଜା | ପାଠରୁ ସବୁ ଜାଣିବା |
| ମୋ ଭାଇଟି ରଜା | ଜାଣିଲେ ପରା ଜିଣିବା |
| ମୋ ଭାଉଜ ରାଣୀ | ସବୁରି ମନ କିଣିବା |
| ମୋ ବଡ଼ ଭଉଣୀ | ନୂଆ ଦୁନିଆ ଗଢ଼ିବା |
| ଅଧେ କଲା ରାଇ | ଜୀବନ ସୁଖେ ଭରିବା |

ଆଉ ରହିଲା ନାହିଁ
ନାଚିବା ଥେଇ ଥେଇ।

## (୨) ବାହା ଗୀତ

ବାପ ବୋଲେ ଝିଅ ମୋର ବାର ବରଷର
ମାଆ ବୋଲେ ଝିଅ ମୋର କୋଳକୁ ସୁନ୍ଦର
ଭାଇ ବୋଲେ ଭଉଣୀ ମୋ ପାଖେ ପାଖେ ଥାଉ
ଭାଉଜ ବୋଲେ ନଣନ୍ଦ ଘରେ ରହିଥାଉ
ଏବେ ତ ପଢ଼ିବ ପାଠ ଶାଣ୍ଡଣା ବେଭାର
ଝିଅ ହେଲେ ବି ତ ତା'ର ଘରେ ଅଧିକାର
ଏକମାତ୍ର ଲକ୍ଷ୍ୟ ନୋହେ ବାହା ଜୀବନର।

## (୩) କୁଟୁମ୍ବ ଗୀତ

ଅନେକ କୁଟୁମ୍ବ ତୁ ହୋ ଅରଜିଲୁ ଧୃତରାଷ୍ଟ୍ର
ଆମ୍ଭର ବିଚାରେ ତୋତେ ହୋଇବ ଅନେକ କଷ୍ଟ।

(ସାରଳା ଦାସ)

[ସଂଗ୍ରହ ଓ ସଂଯୋଜନା- ଶ୍ରୀମତୀ ଶିଶିରବାଳା ରାଉତ]